# ELEMENTS

OF

# NATURAL PHILOSOPHY

## PART III.—NATURAL HISTORY.

ପଦାର୍ଥ ବିଦ୍ୟା ସାର ।

ତୃତୀୟ ଭାଗ

ମନୁଷ୍ୟ, ପଶୁ, ପକ୍ଷୀ, ମତ୍ସ୍ୟ, କୃମି, ଧାତୁ, ଆଦିର ବିବରଣ ।

COMPILED BY

THE REV. A. SUTTON.

CUTTACK:

PRINTED AT THE ORISSA MISSION PRESS,

W. BROOKS, PRINTER.

1858.

# ନିର୍ଘଣ୍ଟପତ୍ର ।

# ପଦାର୍ଥ ବିଦ୍ୟା ସାର ।

## ତୃତୀୟ ଭାଗ ।

### ମନୁଷ୍ୟ, ପଶୁ, ପକ୍ଷୀ, ମତ୍ସ୍ୟ, କୃମି, ଧାତୁ, ଆଦିର ବିବରଣ ।

### ମନୁଷ୍ୟ ବିଷୟର କଥା ।

ଶିଷ୍ୟ । ଏହି ଜଗତର ମଧ୍ୟରେ ପରମେଶ୍ୱରଙ୍କର ପ୍ରଧାନ ସୃଷ୍ଟି କିଏ?

ଗୁରୁ । ସୃଜନର ମଧ୍ୟରେ ମନୁଷ୍ୟ ପ୍ରଧାନ, ଯେହେତୁ ସେମାନଙ୍କର ବିଶେଷ ଜ୍ଞାନ ଥିବାରେ ପୁଣି ମୁଖର ସୌନ୍ଦର୍ଯ୍ୟରେ, ବାକ୍ୟରେ, ଠିଆ ହେବାର ଠାଣିରେ ଓ ବୁଦ୍ଧିଶୀଳ ଆତ୍ମାରେ ସମସ୍ତ ପ୍ରାଣୀଠାରୁ ମନୁଷ୍ୟ ଶ୍ରେଷ୍ଠ ହେଉଛନ୍ତି । ଏହି ନିମନ୍ତେ ପରମେଶ୍ୱର ପୃଥିବୀର ଉପରେ ସେମାନଙ୍କୁ ରାଜ୍ୟାଧିକାର ପଦ ଦେଇଅଛନ୍ତି । ପୁଣି ଅନୁଗ୍ରହ କରି ପୃଥିବୀର ପଶୁଠାରୁ ସେମାନଙ୍କୁ ଜ୍ଞାନବନ୍ତ ପୁଣି ଆକାଶର ପକ୍ଷୀଠାରୁହିଁ ବୁଦ୍ଧିମାନ କରିଅଛନ୍ତି ।

ଶିଷ୍ୟ । ହେ ଅବଧାନ, ଅନୁଗ୍ରହ କରି ମନୁଷ୍ୟ ଶରୀର ବିଷୟରେ କିଛି ଶିକ୍ଷା ଆମ୍ଭକୁ ଦେଉନ୍ତୁ ।

ଗୁରୁ । ମନୁଷ୍ୟର ଶରୀରର ମଧ୍ୟରେ ମୁଖ ପ୍ରଧାନ ଅଙ୍ଗ ହୋଇଅଛି ପୁଣି ତହିଁରେ ପରମେଶ୍ୱରଙ୍କର କି ଆଶ୍ଚର୍ଯ୍ୟ ଗୁଣ ପ୍ରକାଶ! ଦେଖ, ସମସ୍ତଙ୍କର ମୁଖର ଅଙ୍ଗ ପ୍ରତ୍ୟଙ୍ଗ ସମାନ ହେଲେହେଁ ତା ମଧ୍ୟରେ ଏମନ୍ତ ପ୍ରଭେଦ ରଖିଛନ୍ତି ଯେ ଅନାୟାସରେ ଚିହ୍ନା

ଯାଏ ମାଏ ଯେବେ ଏମନ୍ତ ପ୍ରଭେଦ ନ କରନ୍ତେ ତେବେ ନିର୍ଦୋଷୀ ଲୋକେ ଦୋଷୀ ଲୋକର ଉଚିତ ଦଣ୍ଡ ଅନେକଥର ଭୋଗ କରନ୍ତେ ।

ଶିଷ୍ୟ । ଏ କଥା ପୂର୍ବରେ ଆମ୍ଭର ମନେ ନ ଥିଲା ପୁଣି ହେ ଅବଧାନ, ମନୁଷ୍ୟର ସମସ୍ତ ଅଙ୍ଗଠାରୁ ମୁଣ୍ଡ ଏତେ କଠିଣ କିପାଁ ?

ଗୁରୁ । ତାହାର କାରଣ ଏହି, ମସ୍ତକର ମଧ୍ୟରେ ଘୃତର ନ୍ୟାୟ ଯେ ଅତି କୋମଳ ବସ୍ତୁ ଅଛି ତା ମଧ୍ୟରେ ଜ୍ଞାନର ସ୍ଥିତି ହୁଅଇ । ଏନିମନ୍ତେ କୌଣସି ପ୍ରକାରେ ଯେମନ୍ତ ତାହାର ହାନି ନୁହଇ ଏହି ନିମନ୍ତେ ଅତି କଠୋରରୂପରେ କପାଳ ଭାଗ ନିର୍ମାଣ କରିଅଛନ୍ତି ।

ଶିଷ୍ୟ । କେଶ କି କେବଳ ମସ୍ତକର ଶୋଭାର ନିମନ୍ତେ ହୋଇଅଛି ?

ଗୁରୁ । ନାହିଁ, ତାହା କେବଳ ନୋହେ । କେଶରେ ମସ୍ତକ ଉଷୁମ ଥାଏ ପୁଣି ପ୍ରତ୍ୟେକ କେଶର ରନ୍ଧ୍ରରେ ଝାଳ ବାହାର ହୁଅଇ । ଅଉ କେଶ ମସ୍ତକକୁ ଆଘାତଠାରୁ ରକ୍ଷା କରଇ ।

ଶିଷ୍ୟ । ପ୍ରତ୍ୟେକ କେଶର ମୂଳରେ କି ରନ୍ଧ୍ର ଅଛି ?

ଗୁରୁ । ହଁ, ଅତି ସୂକ୍ଷ୍ମ ରନ୍ଧ୍ର ଅଛି ତାହା କ୍ଷୁଦ୍ର ଦୁରବୀଣରେ ଦେଖାଯାଏ ।

ଶିଷ୍ୟ । ଚକ୍ଷୁର ବିଷୟ ଆପଣ କି କିଛି ବୋଲିବେ ?

ଗୁରୁ । ତେବେ ଶୁଣ । ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗର ମଧ୍ୟରେ ଆକ୍ଷି ଅତି ନିପୁଣତାରେ ନିର୍ମିତ ହୋଇଅଛି । ତାହାର କିରୂପ ନିର୍ମାଣ ତାହା କେବଳ ବିଜ୍ଞମାନେ ବୁଝି ପାରନ୍ତି । ଦେଖ, ଅମ୍ଭେମାନେ ମସ୍ତକ ନ ଫେରାଇଲେ ଯେମନ୍ତ ଚଉଦିଗ ଦେଖିବାକୁ ପାରୁ ଏଥିନିମନ୍ତେ ଚକ୍ଷୁ ସ୍ବସ୍ଥାନରେ ଥାଇ ଗମନଶୀଳ ହୁଅଇ ଅଉ ଚକ୍ଷୁ ଏମନ୍ତ ଉତ୍ତମ ସ୍ଥାନରେ ସ୍ଥାପିତ ହୋଇଅଛି ଯେ ଅନାୟାସରେ ତାହାର ରକ୍ଷା ହୁଅଇ । ଯେ ସମୟେ ଚକ୍ଷୁରେ ଅଧିକ ଦୀପ୍ତି ଲାଗଇ ସେ କାଳରେ ଯେମନ୍ତ ତହିଁରେ ଅଧିକ ତେଜଃ ପ୍ରବେଶ ହୋଇ କିଛି

ସ୍ଥାନ କରିବାକୁ ନ ପାରଇ ଏହି ନିମନ୍ତେ ସେ ଆପଣା ଡୋଳାକୁ ସଙ୍କୁଚିତ କରିବାକୁ ପାରଇ । ଅଥବା ଯେବେ ଅଳ୍ପ ତେଜ ଲାଗଇ ସେ କାଳରେ ଅଧିକ ଦୀପ୍ତି ଗ୍ରହଣ କରିବା ପାଇଁ ତାହାକୁ ବିସ୍ତାର କରିବାକୁ ପାରଇ ।

ଶିଷ୍ୟ । ଚକ୍ଷୁର ପତାଲୋମ ଥିବାରେ କି ଫଳ ?

ଗୁରୁ । ପତାଲୋମରେ ପ୍ରଚଣ୍ଡ କିରଣରୁ ଚକ୍ଷୁର ରକ୍ଷା ହୁଅଇ ପୁଣି କ୍ଷୁଦ୍ର୨ ପୋକର ପଶିବାର ନିବାରଣ ହୁଅଇ ।

ଶିଷ୍ୟ । ଅକ୍ଷିର ପତା ଥିବାର ଅମ୍ଭମାନଙ୍କର କି ଉପକାର ?

ଗୁରୁ । ଅକ୍ଷୀ ପତା ନୟନର ଆବରଣ, ତହିଁରେ ଅମ୍ଭେମାନେ ପର୍ଦାର ନ୍ୟାୟ ଦିବସରେ ମେଲି କରିବାକୁ ପାରୁ ରାତ୍ରିକାଳରେ ମୁଦ୍ରିତ କରି ଅନାୟାସରେ ଓ ନିର୍ବିଘ୍ନରେ ନିଦ୍ରା ଯିବାକୁ ପାରୁ ।

ଶିଷ୍ୟ । ଭ୍ରୂ ଥିବାର କି ଫଳ ?

ଗୁରୁ । ଫଳ ଏହି ଯେ ଭ୍ରୂରେ ନୟନ ଧୂଳି ଓ ଝାଳରୁ ରକ୍ଷା ପାଏ ଯେଣୁ ଧୂଳି ଓ ଝାଳ ନୟନରେ ପ୍ରବେଶ ହେଲେ ଅତିଶୟ ଯନ୍ତ୍ରଣାଦାୟକ ହୁଅଇ । ପୁଣି ଦୃଷ୍ଟି ରୋଧ କରିବାକୁ ପାରଇ । ଏନିମନ୍ତେ କୌଣସି୨ ସମୟରେ ଭ୍ରୂ ନୟନକୁ ରକ୍ଷା କରଇ ତାହା କେବଳ ନୋହେ ତାହାକୁ ନିର୍ମଳ ରଖଇ ।

ଶିଷ୍ୟ । ନୟନର ଜଳ କିରୂପେ ଉତ୍ପନ୍ନ ହୁଅଇ ?

ଗୁରୁ । ଚକ୍ଷୁ ଯେମନ୍ତ ସର୍ବଦା କୋମଳ ଓ ନିର୍ମଳ ଥାଏ ଏଥି-ପାଇଁ ସ୍ନିଗ୍ଧିସ୍ଥାନ ଦ୍ୱାରା ଚକ୍ଷୁରେ ସର୍ବଦା ଜଳ ସଞ୍ଚିତ ହୁଅଇ । ଯେ ଜଳ ଚକ୍ଷୁର ଯୋଗ୍ୟ ନୋହେ ସେ ଜଳ ନାସିକାର ଏକ ରନ୍ଧ୍ର ଦେଇ ନାସିକାରେ ପ୍ରବେଶ ହୁଅନ୍ତେ ନାସାର ମଧ୍ୟରେ ପ୍ରସାରିତ ହୁଅଇ ପୁଣି ନିଶ୍ୱାସ ପ୍ରଶ୍ୱାସ ଓ ଉତ୍ତାପରେ ଶୁଷ୍କ ହୋଇ ଯାଏ ।

ଶିଷ୍ୟ । ଭଲା ଅବଧାନ, କର୍ଣ୍ଣହିଁ କି ଏମନ୍ତ ଆଶ୍ଚର୍ଯ୍ୟ ନିର୍ମିତ ?

ଗୁରୁ । ହଁ, ତାହାର ନିର୍ମାଣ ବଡ ଆଶ୍ଚର୍ଯ୍ୟ । ଯେ ସମସ୍ତ ତୁମ୍ଭେ

ଏତେବେଳେ ବୁଝିବାକୁ ନ ପାରବ ପୁଣି ଏକ୍ଷଣେ ତୁମ୍ଭର ଯାହା ପ୍ରୟୋଜନ ତାହା ଅମ୍ଭେ କହୁ । କର୍ଣ୍ଣ ଚର୍ମରେ ଏମନ୍ତ କଠିଣରୂପେ ନର୍ମିତ ଅଛି ଯେ ସର୍ବଦା ଠିଆ ହୋଇ ଶବ୍ଦ ଗ୍ରହଣ କରଇ ତାହାର ରନ୍ଧ୍ର ଦେଇ ମସ୍ତକର ମଧ୍ୟରେ ଶବ୍ଦ ପ୍ରବେଶ ହୁଅଇ ।

ଶିଷ୍ୟ । ଏକକୁଅରେକ କଥାବାର୍ତ୍ତା ସମୟରେ ଅମ୍ଭେମାନେ କ ପ୍ରକାରେ ଅତ ଶୀଘ୍ର ତାହା ଶୁଣିବାକୁ ପାଇ ?

ଗୁରୁ । ଅମ୍ଭେମାନେ ଯେମନ୍ତ ସମସ୍ତ କଥା ଅତଶୀଘ୍ର ଶୁଣିବାକୁ ପାଇ ଏକାରଣେ ପରମେଶ୍ୱର ଅନୁଗ୍ରହ କର ଶବ୍ଦର ଏମନ୍ତ ଶୀଘ୍ରଗତ କରଅଛନ୍ତି ଯେ ବନ୍ଧୁକର ଗୁଳିଠାରୁ ଶବ୍ଦ ଦ୍ୱିଗୁଣ ଶୀଘ୍ର ଚଳଇ ।

ଶିଷ୍ୟ । ଏ ବଡ ଆଶ୍ଚର୍ଯ୍ୟ । ପୁଣି ଅଘ୍ରାଣର ବିଷୟ ଅବଧାନ ପୂର୍ବ୍ବରେ କଛି ନ କହିଲ ତାହା ଶୁଣିବାକୁ ଅମ୍ଭର ବଡ ବାଞ୍ଛା ।

ଗୁରୁ । ଅମ୍ଭେମାନେ ଯେମନ୍ତ ଭୋଜନର ପୂର୍ବେ ଗନ୍ଧରେ ସୁସ୍ୱାଦୁ ପୁଣି ଅସ୍ୱାଦୁ ଦ୍ରବ୍ୟ ବୁଝିବାକୁ ପାର ଏହି ହେତର ନମନ୍ତେ ଜ୍ଞାନବାନ ସୃଷ୍ଟିକର୍ତ୍ତା ଅମ୍ଭମାନଙ୍କର ମୁଖର ଉପର ଭାଗରେ ନାସିକା ସ୍ଥାପନ କରଅଛନ୍ତି, ଆଉ ସେ ନାସିକାର ରନ୍ଧ୍ର ନପୁଣତାରେ ନର୍ମାଣ କରଅଛନ୍ତି । ଯେମନ୍ତ ଅତଶୀଘ୍ର ଗନ୍ଧ ଗ୍ରହଣ ହୁଅଇ ପୁଣି ମସ୍ତକର ସମସ୍ତ ଶ୍ଳେଷ୍ମା ଯେମନ୍ତ ସେ ରନ୍ଧ୍ର ପଥରେ ବାହାର ହୁଅଇ ଏନମନ୍ତେ ତାହାର ତଳଭାଗ ପ୍ରଶସ୍ତ କର ନର୍ମାଣ କରଅଛନ୍ତି । ଆଉ ଭୋଜନ ସମୟରେ ଯେବେ ମୁଖ ବାଟରେ ବାୟୁ ବାହାର କରିବାକୁ ନ ପାର ସେ ସମୟେ ସେ ରନ୍ଧ୍ରରେ ନଶ୍ୱାସ ତ୍ୟାଗ କର ।

ଶିଷ୍ୟ । ଆସ୍ୱାଦ ଗ୍ରହଣ ପୁଣି ସ୍ପର୍ଶର ବିଷୟ ଆପଣ କଛି ଜାଣନ୍ତି ?

ଗୁରୁ । ହଁ, ଆସ୍ୱାଦ ଗ୍ରହଣରେ ଅମ୍ଭେମାନେ ଭଲ ମନ୍ଦ ଖାଦ୍ୟ ସାମଗ୍ରୀ ନଶ୍ଚୟ କରବାକୁ ପାର । ଆଉ ତହିଁରେ ଅନେକ ସୁଖ ଅଛି । ମସ୍ତକରେଇ ଆଉ ସବୁ ଇନ୍ଦ୍ରିୟର ସ୍ଥାନ ଅଛି କେବଳ ସ୍ପର୍ଶେନ୍ଦ୍ରିୟ ସର୍ବାଙ୍ଗରେ ବ୍ୟାପି ଥାଏ ।

ଶିଷ୍ୟ । ଇନ୍ଦ୍ରିୟର ଅଧିକ ଶକ୍ତି କେଉଁ ସ୍ଥାନରେ ଥାଏ ?

ଗୁରୁ । ଯେ ସ୍ଥାନରେ ସର୍ବଦା ପ୍ରୟୋଜନ ସେହି ସ୍ଥାନରେ ଥାଏ । ଦେଖ, ଜିହ୍ୱାର ଅଗ୍ରଭାଗରେ ବିଶେଷ ଆସ୍ୱାଦନ ଶକ୍ତି ଥାଏ ପୁଣି ଅଙ୍ଗୁଳିର ଅଗ୍ରଭାଗରେ ବିଶେଷ ସ୍ପର୍ଶ ଶକ୍ତି ଥାଏ । ଏହିରୂପେ ସମସ୍ତ ଇନ୍ଦ୍ରିୟର ବିଶେଷ୨ ସ୍ଥାନ ଅଛି ଜାଣିବ । ଆମ୍ଭମାନଙ୍କର ରକ୍ଷାର ନିମନ୍ତେ ପରମେଶ୍ୱର ଆମ୍ଭମାନଙ୍କୁ ସମସ୍ତ ଇନ୍ଦ୍ରିୟ ଦେଇ ଅଛନ୍ତି ତହିଁରେ ଯେବେ ଏକ ଇନ୍ଦ୍ରିୟର ହାନି ହୁଅଇ ତେବେ ଆଉ ଇନ୍ଦ୍ରିୟର ଶକ୍ତି ବୃଦ୍ଧି ହୁଅଇ । ତାହାର ପ୍ରମାଣ ଦେଖ, ଅନ୍ଧ ଲୋକମାନଙ୍କର ଶ୍ରବଣ ପୁଣି ସ୍ପର୍ଶନ ଶକ୍ତି ଅଧିକ ଥାଏ ।

ଶିଷ୍ୟ । ମସ୍ତକ ବିଷୟରେ ଆଉ କୌଣସି କଥା ଅଛି କି ନାହିଁ ?

ଗୁରୁ । ହଁ ଅଛି । ଦେଖ, ଜିହ୍ୱାର କେମନ୍ତ ଆଶ୍ଚର୍ଯ୍ୟ କହିବାର ଗୁଣ ତହିଁରେ ଆମ୍ଭମାନଙ୍କର ବହୁତ ସୁଖ ବୋଧ ହେଉଅଛି । ଯେଣୁ ତହିଁରେ ଆମ୍ଭେମାନେ ଖାଦ୍ୟଦ୍ରବ୍ୟ ଚର୍ବଣ କରୁ ଓ ଖାଉଲରଦ୍ରବ୍ୟ ଜୀର୍ଣ୍ଣ ନିମନ୍ତେ ମୁଖର ରସରେ ମିଶାଇ ଗଲା ବାଟରେ ଉଦରରେ ପ୍ରବେଶ କରାଉଅଛୁଁ । ଏନିମନ୍ତେ ଜିହ୍ୱା ଆମ୍ଭମାନଙ୍କର ବଡ ଉପକାର କରଇ ତାହାଇ କେବଳ ନୁହଇ ଜିହ୍ୱା ନ ଥିଲେ ବାକ୍ୟ ଓ ରାଗ ରାଗଣୀ କିଛି ନ ହୁଅନ୍ତା ।

ଶିଷ୍ୟ । ଦନ୍ତ ଯେ କିନିମନ୍ତେ ଜାତ ହୋଇଅଛି ତାହା ଆମ୍ଭେ ଜାଣି ଏନିମନ୍ତେ ସେ କଥା ପଚାରୁ ନାହୁଁ । ପୁଣି ସେ ବିଷୟରେ ଗୋଟିଏକ କଥା ପଚାରିବାକୁ ଅଛି ଏହି ଯେ ନିତ୍ୟ୨ ଭୋଜନ ସମୟେ ଚର୍ବଣରେ ଘୋର ଗଲେହେଁ ଦନ୍ତର କ୍ଷୟ ନୁହଇ କିପାଇଁ ?

ଗୁରୁ । ଦନ୍ତର ଉପର ଭାଗ ଅତି କଠିଣ ଏ ସକାଶୁଁ ସେହି କଠିଣତା ଯେ ପର୍ଯ୍ୟନ୍ତେ ଥାଏ ତାବତି ଦନ୍ତର ଅତିଅଳ୍ପ କ୍ଷୟ ହୁଅଇ । ପୁଣି ସେ କଠିଣତା ସମସ୍ତ ନଷ୍ଟ ହେଲେ ଦନ୍ତର ବେଦନା ଜନ୍ମଇ ପୁଣି ଦ୍ରୁତ ନାଶ ହୁଅଇ । ଆଉ ଦନ୍ତ ଯେ କେବଳ

ଚର୍ବଣର ନିମନ୍ତେ ଏମନ୍ତ ନୋହେ ବାକ୍ୟ ଉଚ୍ଚାରଣରେ ଅତ୍ୟନ୍ତ ଉପକାରୀ ହୁଅଇ । ଯେହେତୁ ବହୁ ଦନ୍ତହୀନ ଜନର ବାକ୍ୟ ଶୁଦ୍ଧରୂପେ ଉଚ୍ଚାରିତ ନୁହଇ । ପୁଣି ବାକ୍ୟ ଉଚ୍ଚାରଣରେ ଓଷ୍ଠାଧର ଉପକାରକ ଅଟନ୍ତି ଏନିମନ୍ତେ କୌଣସି୨ ଅକ୍ଷରକୁ ଓଷ୍ଠ୍ୟବର୍ଣ୍ଣ ବୋଲନ୍ତି ।

ଶିଷ୍ୟ । ଗଳାର ବିଷୟରେ ଆପଣ କି କୌଣସି କଥା ବୋଲିବ ?

ଗୁରୁ । ଗଳାର ମଧ୍ୟରେ ରନ୍ଧ୍ରଯୁକ୍ତ ଏକ ନଳୀ ଅଛି ତହିଁରେ ଆମ୍ଭେମାନେ ନିଶ୍ୱାସ ତ୍ୟାଗ କରୁ । ଅଉ ଯେ ନଳୀରେ ଖାଦ୍ୟ ବସ୍ତୁ ଉଦରେ ପ୍ରବେଶ ହୁଅଇ ସେ ନଳୀ ଏହି ନଳୀର ପଛଭାଗରେ ଥାଏ ।

ଶିଷ୍ୟ । ଭଲ ଅବଧାନ, ଖାଦ୍ୟଦ୍ରବ୍ୟ କି ଅଉ ନଳୀର ଭିତରେ ପଡିବାର ଆଶଙ୍କା ନୋହେ ?

ଗୁରୁ । ତୁମ୍ଭର ଯେ ଏମନ୍ତ ଆଶଙ୍କା ହୁଅଇ ଏଥିରେ ଆମ୍ଭେ ଆଶ୍ଚର୍ଯ୍ୟଜ୍ଞାନ ନ କରୁ ଯେଣୁ ସମସ୍ତର ଏମନ୍ତ ବୋଧ ହେବାକୁ ପାରଇ । ପୁଣି ତା ମଧ୍ୟରେ ଅନ୍ନ ପ୍ରବେଶ ହେବାରେ କିଛି ବାଧା ଅଛି ଯେହେତୁ ଜିହ୍ୱାର ମୂଳରେ ଖଣ୍ଡେ ଚର୍ମ୍ମ ବିଶେଷ ଥିବାରୁଁ ଯେ ସମୟ ଅମ୍ଭମାନଙ୍କର ଖାଦ୍ୟ ଗଳାରେ ପ୍ରବେଶ ହୁଅଇ ସେ କାଳେ ସେ ଚର୍ମ୍ମ ନଳୀ ଉପରେ ବିସ୍ତାରିତ ହୁଅଇ । ଯେମନ୍ତ ଲୋକମାନେ ପୁଲର ଉପରେ ଗମନ କରନ୍ତି ସେରୂପେ ଖାଦ୍ୟ ବସ୍ତୁ ସେ ଚର୍ମ୍ମର ଉପର ଦେଇ ଉଦରକୁ ଯାଏ ।

ଶିଷ୍ୟ । ଭୋଜନ କାଳରେଁ କେବେ୨ ଅମ୍ଭମାନଙ୍କର ଯେ ପୀଡା ଲାଗଇ ତାହାର କାରଣ କି ?

ଗୁରୁ । ଯେ ସମୟରେ ଅନ୍ନ କଣିକା ନଳୀର ମଧ୍ୟରେ ପଡଇ ସେ କାଳରେ କ୍ଳେଶଦାୟକ ହୁଅଇ । ଅର୍ଥାତ ମୁଖର ମଧ୍ୟରେ ଗ୍ରାସ ରଖି ଯେବେ ହାସ୍ୟ କିଅବା କଥାବାର୍ତ୍ତା କରୁ ତେବେ ବିଷମ

ଲାଗିବାକୁ ପାରଇ ନୋହିଲେ ସାମାନ୍ୟ ଭୋଜନରେ ନୁହିଁ । ଗଳାର ମଧ୍ୟରେ ଅନେକ ସନ୍ଧିସ୍ଥାନ ଅଛି ତହିଁରେ ଅମ୍ଭେମାନେ ଖସ୍ତର ନ ଚଳାଇ ମସ୍ତକ ଫେରାଇବାକୁ ପାରୁ । ପୁଣି ଗଳାରେ ଏମନ୍ତ କଠିଣ ଅସ୍ଥି ଅଛି ଯେ ତହିଁରେ ମସ୍ତକ ଠିପ୍ ହୋଇ ଥାଏ । ଏନିମନ୍ତେ ଦେଖ, କେମନ୍ତ ଆଶ୍ଚର୍ଯ୍ୟ ପଦ୍ଧତିରେ ଗଳା ନିର୍ମିତ ହୋଇଅଛି । ପୁଣି ଏରୂପେ ନୋହିଲେ ମନୁଷ୍ୟର ଶୋଭା ସୌନ୍ଦର୍ଯ୍ୟର ହାନି ଜନ୍ମନ୍ତା ।

ମସ୍ତକ ଓ ଗଳାଦେଶର ବିଷୟ ସମସ୍ତ କହିଲୁଁ, ଏବେ ଶରୀରର ଅଉ ଭାଗ ବିଷୟ କିଛି କହି । ଗୃହର ମଧ୍ୟରେ ଯେମନ୍ତ ଖମ୍ବ ଥାଏ ସେହିରୂପେ ଶରୀରର ମଧ୍ୟରେ ଏକ ଖଣ୍ଡେ ବଡ ଅସ୍ଥି ଅଛି ପୁଣି ରଜ୍ଜୁର ସଦୃଶ ମାଂସ ଶିର ସମସ୍ତ ବିସ୍ତାରିତ ହୋଇ ଥାଏ ଆକର୍ଷଣ କରି ସମସ୍ତକୁ ଚଳାଏ । ଶରୀର ସ୍ଥାୟି ଯେ ରକ୍ତବାହିନୀ ନାଡୀ ସେ ସ୍ୱାସ୍ଥ୍ୟରୂପ ନଦୀ ପୁଣି ନିର୍ଝରସ୍ୱରୂପ ଜୀବନ ହୋଇଅଛି । ପୁଣି ଅନ୍ତରେ ବଡ ନିର୍ଝର କଥବା କର୍ମିଣ୍ଡ ଏକ ଯନ୍ତ୍ର ବିଶେଷର ନ୍ୟାୟ ଅନ୍ତଃକରଣ ହୋଇଅଛି ତାହାଠାରୁ ରକ୍ତବାହିନୀ ନାଡୀରେ ଶରୀର ମଧ୍ୟରେ ରକ୍ତ ପ୍ରବେଶ ହୋଇ ପୁନର୍ବାର ରକ୍ତବାହିନୀ ନାଡୀରେ ବାହୁଡି ଆସଇ ଏହିରୂପେ ଅନ୍ତଃକରଣସ୍ଥ ନାଡୀରେ ସର୍ବଦା ରକ୍ତ ଚଳୁଅଛି । ଅଉ ହୃଦୟ ମଧ୍ୟରେ ଫୁସ୍ଫୁସି ନାମରେ ଏକ ବସ୍ତୁ ଅଛି ସେ ପ୍ରଥମେ ଉତ୍ତମ ବାୟୁ ଗ୍ରହଣ କରି ରକ୍ତକୁ ଶୀତଳ ଓ ନିର୍ମଳ କରଇ ସେ ବାୟୁର କର୍ମ ସମାପ୍ତ ହେଲେ ଫୁସ୍ଫୁସି ସେହି ଅସାର ବାୟୁ ପରିତ୍ୟାଗ କରଇ ତାହାର ଏହିରୂପ ଦୁଇ କର୍ମ । ତାହା ଛଡା ଶରୀରର ମଧ୍ୟରେ ଆମାଶୟ ନାମରେ ଏକ କର୍ମଗୃହ ଅଛି ତାହାର ମଧ୍ୟରେ ଶରୀରର ସ୍ୱାସ୍ଥ୍ୟର ନିମନ୍ତେ ସବୁ ପ୍ରୟୋଜନ ବସ୍ତୁ ପ୍ରସ୍ତୁତ ଥାଏ । ଏହି ପ୍ରକାର ହେବାରେ ଅମ୍ଭମାନଙ୍କର ଶରୀର ଏକ ଗୃହସ୍ୱରୂପ ହୋଇଅଛି ।

ତହିଁରେ ବାହୁ, କର, ଅଙ୍ଗୁଳି ସମସ୍ତ ତାହାର ରକ୍ଷକ ହୋଇ-ଅଛି । ଜୀବନର ରକ୍ଷାର ନିମନ୍ତେ ସେମାନେ ବହୁତ କର୍ମ ସମସ୍ତ କରନ୍ତି । ଏହି ନିମନ୍ତେ ଅଙ୍ଗୁଳିଗଣ ନାନା ସନ୍ଧି ଓ କଠିଣ ମାଂସ ଶିରାରେ ନିର୍ମିତ ହୋଇ କାର୍ଯ୍ୟ ବିଷୟରେ ଅତ୍ୟନ୍ତ ତତ୍ପର ଅଛି ।

ଶିଷ୍ୟ । ବାମ ହସ୍ତଠାରୁ ଦକ୍ଷିଣ ହସ୍ତରେ କି ମାଂସପେଶୀ ଅଧିକ ସଂଖ୍ୟା କିଅବା ଅଧିକ ଚାଣ୍ଠିଆ?

ଗୁରୁ । ତାହା ନୋହେ । ବାଲ୍ୟକାଳରୁ ଦକ୍ଷିଣ ହସ୍ତରେ ସମସ୍ତ କର୍ମ କରୁଅଛୁଁ ଏନିମନ୍ତେ ସେହି ଅଭ୍ୟାସରେ ଆମ୍ଭମାନଙ୍କ ଦକ୍ଷିଣ ହସ୍ତ କର୍ମରେ ଅଧିକ ନିପୁଣ ।

ଶିଷ୍ୟ । ଏ ବିଷୟରେ କି ଆଉ କୌଣସି କଥା ଅଛି?

ଗୁରୁ । ହିଁ, ଏଥିରେ ଆଉ ଏକ ବିଷୟ ବିବେଚନାର ଯୋଗ୍ୟ ଅଛି । ଦେଖ, ପ୍ରତିଦିନ କର୍ମ କରି ୨ ଆମ୍ଭମାନଙ୍କର ହସ୍ତ କ୍ଷୟ ନୋହି ବରଞ୍ଚ କ୍ରମେ କଠିଣ ଓ ସ୍ଥୂଳ ହୁଅଇ ପୁଣି ତହିଁରୁ ସ୍ପର୍ଶ ଗୁଣର ଅତ୍ୟନ୍ତ ହାନି ନ ହୁଅଇ ସେହିରୂପେ ଦୁଇ ଚରଣର ବିଷୟ ଜାଣିବ । ଆଉ ଦେଖ, ବଡ ଅଙ୍ଗୁଷ୍ଠି ଏମନ୍ତ ସ୍ଥାନରେ ସ୍ଥାପିତ ହୋଇ-ଅଛି ଯେ ତହିଁରେ ଆଉ ଅଙ୍ଗୁଳି ସମସ୍ତ ଶକ୍ତିଯୁକ୍ତ ହୋଇ ଉତ୍ତମ-ରୂପେ ଧାରଣ କରିବାକୁ ପାରନ୍ତି ତହିଁରେ ଏହି ପାଞ୍ଚ ଅଙ୍ଗୁଳିଦ୍ୱାରା ଅନାୟାସରେ ଲେଖନ ଓ ଚିତ୍ରକର୍ମ ଓ ଯନ୍ତ୍ରାଦି ବାଜଣା ଇତ୍ୟାଦି କର୍ମରେ ପାରକ ହେଉଅଛନ୍ତି । ଏହା ବିନୁ ଶରୀରର ସମସ୍ତ ଅଙ୍ଗ ଏକତ୍ର କରିବା ନିମନ୍ତେ ନୂତନ ବସ୍ତ୍ରର ପ୍ରାୟେ ଏକ ଅଶ୍ଚର୍ଯ୍ୟ ନିର୍ମିତ ସୂକ୍ଷ୍ମ ଚର୍ମ ସର୍ବାଙ୍ଗରେ ଆଚ୍ଛାଦିତ ଅଛି ପୁଣି ତାହାର ମଧ୍ୟରେ ଅସଂଖ୍ୟ କ୍ଷୁଦ୍ର ରନ୍ଧ୍ରଯୁକ୍ତ ଲୋମକୂପ ସମସ୍ତ ଅଛି ।

ଶିଷ୍ୟ । ଲୋମକୂପ ହେବାର କି ଫଳ?

ଗୁରୁ । ସେ ଲୋମକୂପରେ ଶରୀରସ୍ଥ ଦୁଷ୍ଟ ଝାଳ ବାହାର ହୁଅଇ । ଆମ୍ଭମାନଙ୍କର ଶରୀର ସ୍ୱାସ୍ଥ୍ୟର ନିମନ୍ତେ ସର୍ବଦା ସେ ଝାଳ ନିର୍ଗତ

ହେବାର ପ୍ରୟୋଜନ ଅଛି । ଯେଣୁ ଶରୀରରେ ଯେବେ ସ୍ୱେଦ ବନ୍ଦ ଥାଏ ତେବେ ଜ୍ୱରାଦି ରୋଗ ଜନ୍ମି ଅନେକର ପ୍ରାଣର ହାନି ଜନ୍ମାଇବାକୁ ପାରଇ । ଏହେତୁ ସେ ସ୍ୱେଦ ନିର୍ଗତ ନିମନ୍ତେ ପରିଶ୍ରମଯୁକ୍ତ ଓ ପରିଷ୍କାର ହେବାର ଆମ୍ଭମାନଙ୍କର ଉଚିତ ।

ଶିଷ୍ୟ । ଆମ୍ଭମାନଙ୍କର ଶରୀରରୁ ଯେ ସର୍ବଦା ସ୍ୱେଦ ବାହାର ହୁଅଇ ତାହା କିରୂପେ ଜଣା ଯାଏ ?

ଗୁରୁ । ଗ୍ରୀଷ୍ମ କାଳରେ ନିର୍ମଳ ପରିଷ୍କୃତ କୌଣସି ଧାତୁ ଯେବେ କିଛିକାଳ ଅଙ୍ଗରେ ରଖ ତହିଁରେ ସ୍ପଷ୍ଟରୂପେ ପ୍ରମାଣ ପାଇବାକୁ ପାର । ତାହା ଛଡା ଯେବେ ନିର୍ମଳ ଶୁଷ୍କ କୌଣସି ବଡ ଗିଲାସର ମଧ୍ୟରେ କିଛିକାଳ ବସ୍ତ୍ରରହିତ ହସ୍ତ ରଖ ତେବେ ସେ ଗିଲାସର ଉପରେ ଭାଷ୍ପରୂପ ହୋଇବାର ସ୍ୱେଦ ଦେଖାଯିବ । ଆଉ ଯେବେ ବହୁତ ବେଳ ପର୍ଯ୍ୟନ୍ତ ହସ୍ତ ରଖ ତେବେ ତହିଁରେ ଜଳ ରେଖାର ପ୍ରାୟେ ଦେଖିବାକୁ ପାଇବ ।

---

ଶରୀରର ଅନ୍ତସ୍ଥ ବିଷୟରେ ।

ଶିଷ୍ୟ । ଅବଧାନ ଯେବେ ଅନୁଗ୍ରହ କରି ଅନ୍ତର୍ଗତ ଅଦୃଶ୍ୟ ଶରୀରର ବିଷୟ ସ୍ପଷ୍ଟରୂପେ ଆମ୍ଭକୁ ଜଣାଅ ତେବେ ଅମ୍ଭେ ବଡ ଅହ୍ଲାଦିତ ହେବା ।

ଗୁରୁ । ଅନ୍ତର୍ଗତ ଅଙ୍ଗର ମଧ୍ୟରେ ପ୍ରଧାନ ଅଙ୍ଗ ହୋଇଅଛି ଆମାଶୟ ସ୍ଥାନ । ତା ମଧ୍ୟରେ ଖାଇଲାର ଦ୍ରବ୍ୟ ସମସ୍ତ ପରିପକ୍ୱ ହୁଅଇ । ପୁଣି ପାଚକ ନାମରେ ପିତ୍ତକୋଷରୁ ନିତ୍ୟ୨ ପିତ୍ତରସ ସେ ଆମାଶୟ ସ୍ଥାନରେ ପ୍ରବେଶ ହୁଅଛି । ଦ୍ୱିତୀୟ ସ୍ଥାନ ଉଦର ନାଡୀ । ଭୋଜନ ଦ୍ରବ୍ୟ ସମସ୍ତ ପରିପକ୍ୱ ହୋଇ ଆମାଶୟ ଠାରୁ ତା ମଧ୍ୟରେ ପ୍ରବେଶ ହୁଅଇ । ତହିଁ ସେ ଭୋଜନ ବସ୍ତୁର କୋମଳ ଭାଗ ଚଲିକି ଯାଏ ପୁଣି ରସମୟ ଭାଗ ଶୋଷକ ନାଡ଼ିରେ ପଡ

ଶୁଷ୍କ ହୁଅଇ । ଏହି ଶୋଷକ ନାଡୀର ବିଶେଷ ନାମ ଦୁଗ୍ଧପ୍ରବାହକ ନାଡୀ ସେ ଉଦରର ମଧ୍ୟରେ ଅତି ଆଶ୍ଚର୍ଯ୍ୟରୂପେ ନିର୍ମିତ ଅଛି । ସେ ଉଦରର ନାଡୀ ଦୀର୍ଘରେ ପ୍ରାୟେ କୋଡିଏ ହାତ ପରିମାଣ ହୋଇହିଁ ବେଷ୍ଟନରେ ଅତି ଅଳ୍ପ ସ୍ଥାନରେ ଥାଏ ।

ଶିଷ୍ୟ । ଖାଇଲା ଦ୍ରବ୍ୟର କି ପ୍ରକାରେ ଶରୀର ରକ୍ଷା ହୁଅଇ ।

ଗୁରୁ । ଖାଇଲା ଦ୍ରବ୍ୟର ସ୍ନିଗ୍ଧରସ ଅର୍ଥାତ ଯାହାକୁ ଅନ୍ନରସ ବୋଲି ସେ ରସ ଉତ୍ପନ୍ନ ହୋଇ ବକ୍ଷସ୍ଥଳସ୍ଥ ପ୍ରଣାଳୀଦ୍ୱାରା ଅନ୍ତଃକରଣରେ ପ୍ରବେଶ ହୋଇ ରକ୍ତ ହୁଅଇ ।

ଶିଷ୍ୟ । ଏହା କେମନ୍ତ କରି ଜାଣିବ ?

ଗୁରୁ । ଅନ୍ତଃକରଣ ସେ ଅନ୍ନରସ ଗ୍ରହଣ କରି ଫୁସ୍ଫୁସିରେ ପ୍ରବେଶ କରାଇଲେ ଫୁସ୍ଫୁସିରେ ସେ ସମସ୍ତ ରସ ରକ୍ତ ହୁଅଇ । ପୁଣି ନଳୀରେ ଯେ ଅକ୍ଜପା ନାମକ ବାୟୁ ଫୁସ୍ଫୁସିରେ ପ୍ରବେଶ ହୁଅଇ ତହିଁରେ ସେ ରକ୍ତ ପରିଷ୍କୃତ ହୋଇ ପୁନର୍ବାର ଅନ୍ତଃକରଣରେ ପ୍ରବେଶ ହୁଅଇ । ଏହିରୂପେ ଉତ୍ତମ ରକ୍ତ ଜନ୍ମି ଶରୀରକୁ ରକ୍ଷା କରଇ ।

ଶିଷ୍ୟ । ରକ୍ତର ଚାଳଣା କି ପ୍ରକାରେ ହୁଅଇ ?

ଗୁରୁ । ଏ ବିଷୟରେ ଜୀବନ ରକ୍ଷାର ବଡ ଏକ ସାର କଥା ଅଛି ଅର୍ଥାତ ଅନ୍ତଃକରଣର ଏମନ୍ତ ଏକ ଶକ୍ତି ଅଛି ଯେ ତହିଁରେ ଆପଣା ରକ୍ତ ପିଠାଇବାକୁ ଓ ବନ୍ଦ କରିବାକୁ ପାରଇ । ରକ୍ତ ମୁକ୍ତ କରିବାର ନାମ ଅନ୍ତଃକରଣର ମେଲା ପୁଣି ବନ୍ଦ କରିବାର ନାମ ଅନ୍ତଃକରଣର ସଙ୍କୋଚତା ଏହି ଦୁଇ କର୍ମ ଯେ ପର୍ଯ୍ୟନ୍ତେ ଚଳଇ ତାବତ ଆମ୍ଭେମାନେ ଜୀବନ ଧାରଣ କରିବାକୁ ପାରି । ଯେହେତୁ ମେଲାଇବାରେ ଅନ୍ତଃକରଣରେ ରକ୍ତ ଆଣାଯାଏ ପୁଣି ସଙ୍କୋଚତାରେ ରକ୍ତବାହିନୀ ନାଡୀରେ ରକ୍ତ ପ୍ରବେଶ ହୁଅଇ । ଏଥିରେ ଅନୁମାନ ହୁଅଇ ଯେ ନିଦ୍ରିତ କିଅବା ଜାଗ୍ରତ କ୍ଷୁଦ୍ର

ବାଳକର ଅନ୍ତଃକରଣରେ ଅଢ଼ାଇ ଦଣ୍ଡର ମଧ୍ୟରେ ଛ ହଜାର ଥର ପୁଣି ଯୁବା ମନୁଷ୍ୟରେ ଚାରି ହଜାର ଥର ନାଡ଼ୀର ଗମନ ହୁଅଇ ।

ଶିଷ୍ୟ । ରକ୍ତର ଗତି ବିଷୟରେ ସମସ୍ତ ବୋଧ କରିବାକୁ ନ ପାରି ତହିଁରେ ସନ୍ଦେହ ହୁଅଇ ।

ଗୁରୁ । ରକ୍ତର ଗତି କହିଲେ ଫୁସ୍ଫୁସିରେ ଓ ରକ୍ତ ପ୍ରବାହିନୀ ନାଡ଼ୀରେ ତାହାର ଯେ୨ ରୂପ ଗତି ତାହା ସମସ୍ତଙ୍କ ବୋଧଗମ୍ୟ ହେବାରେ ଶୁଦ୍ଧ ସ୍ପଷ୍ଟରୂପରେ ରକ୍ତର ଗତି ବୋଲି ଯାଏ ଯେ-ହେତୁ ରକ୍ତ ଶରୀରର ମଧ୍ୟରେ ସର୍ବଦା ଗତି କରୁଅଛି ।

ଶିଷ୍ୟ । ଅନ୍ନର ରସଠାରୁହିଁ ଯେ ରକ୍ତ ଜନ୍ମଇ ଏହା କି ଆପଣ ନ କହିଲ?

ଗୁରୁ । ହିଁ, ତାହାଠାରୁହିଁ ରକ୍ତ ଜନ୍ମଇ ପ୍ରମାଣ ମାତ୍ର ଖାଇ-ବାର ଦ୍ରବ୍ୟର ଅଗେ କ୍ରମେ୨ ନାନା ବିକାର ପ୍ରାପ୍ତ ହୁଅଇ ଶେଷରେ ରସ ହେଲେ ସେହି ରସରୁ ନୂତନ ରକ୍ତ ଜନ୍ମି ବକ୍ଷ-ସ୍ଥଳସ୍ଥ ପ୍ରଣାଳୀରେ ପ୍ରବେଶ କରିଁ୨ ସେହି ପ୍ରଣାଳୀରୁ ରକ୍ତ-ବାହିନୀ ନାଡ଼ୀରେ ଗମନ କରଇ । ତହୁଁ ଅବଗମନ କରୁଛୁ ଯେ ପୂର୍ବର ରକ୍ତ ତାହା ସଙ୍ଗେ ନୂତନ ରକ୍ତ ଅନ୍ତଃକରଣରେ ପ୍ରବେଶ ହୋଇ ସେଠାରୁ ଫୁସ୍ଫୁସିରେ ଯାଏ ପୁଣି ଫୁସ୍ଫୁସିରୁ ପୁନର୍ବାର ଅନ୍ତଃକରଣରେ ଫେରି ଅସଇ ।

ଶିଷ୍ୟ । ତହିଁଉତ୍ତାରେ କି ହୁଅଇ?

ଗୁରୁ । ହେ ରକ୍ତ ଫୁସ୍ଫୁସି ଦ୍ୱାରା ଅନ୍ତଃକରଣରେ ପ୍ରବେଶ ହୁଅନ୍ତେ ସେଠାରୁ ସର୍ବାଙ୍ଗରେ ଖେଳାଏ ତହୁଁ ପ୍ରତ୍ୟେକ ଅଙ୍ଗ ତ୍ୟଙ୍ଗର ଅଗ୍ରଭାଗସ୍ଥିତ ରକ୍ତବାହିନୀ ନାଡ଼ୀରେ ପୁନର୍ବାର ହୃଦୟ-ରେ ପ୍ରବେଶ ହୁଅଇ ।

ଶିଷ୍ୟ । ଶରୀରର ମଧ୍ୟରେ ଯେତେ ଥର ରକ୍ତ ଗମନାଗମନ

କରନ୍ତି ତେବେ ଅଧିକ ଯେ ରକ୍ତବାହିନୀ ନାଡ଼ୀରେ ଫୁସ୍ଫୁସିରେ ଯାଏ ଏହାର କାରଣ କି?

ଗୁରୁ । ଯେବେ କୌଣସି ରକ୍ତର କିଛି ଗୁଣର ହାନି ଜନ୍ମଇ ତେବେ ସେ ଫୁସ୍ଫୁସିରେ ଗମନ କରିବାରେ ତା ମଧ୍ୟସ୍ଥ ବାୟୁରେ ସେ ପୁନର୍ବାର ଶୁଦ୍ଧ ପୁଣି କର୍ମଯୋଗ୍ୟ ହୁଅଇ ।

ଶିଷ୍ୟ । ଏ କଥା ଶୁଣି ଆମ୍ଭର ଚମତ୍କାର ଜ୍ଞାନ ହେଲା?

ଗୁରୁ । ଈଶ୍ୱର ଯେ ଆମ୍ଭମାନଙ୍କୁ ଏମନ୍ତ ଆଶ୍ଚର୍ଯ୍ୟ ରୂପରେ ସୃଜନ କରିଅଛନ୍ତି ତୁମ୍ଭେ ତାହାଙ୍କର ଧନ୍ୟବାଦ କର । ଏହି ବିଷୟରେ ଆହୁରି ଗୋଟିଏକ କଥା କହିବାକୁ ଅଛି ତାହା ତୁମ୍ଭର ଅଧିକ ମନ ଲଗାଇବାର ଯୋଗ୍ୟ ଅଟଇ ପୁଣି ଶୁଣିହିଁ ଆଶ୍ଚର୍ଯ୍ୟଜ୍ଞାନ କରିବ ଏନିମନ୍ତେ ତାହା କହି ଶୁଣ । ଯେ ରକ୍ତ ରକ୍ତବାହିନୀ ନାଡ଼ିରେ ସର୍ବ ଶରୀରରୁ ହୃଦୟରେ ପ୍ରବେଶ ହୁଅଇ ସେ ଯେବେ ନିକଟସ୍ଥ ହୋଇ ହୃଦୟରେ ପ୍ରବେଶ ନୋହି ଚଳକି ଯାଏ ତେବେ ଆମ୍ଭମାନଙ୍କର ତତ୍କ୍ଷଣାତ୍ ପ୍ରାଣ ଛୁଟି ଯାଏ । ପୁଣି ଏହି ଘଟଣା ନୋହିବାର ଏକ ପ୍ରତିବନ୍ଧକ ଅଛି ଅର୍ଥାତ୍ ରକ୍ତ-ବାହିନୀ ନାଡ଼ୀରେ ଏକ କବାଟ ବିଶେଷ ଥିବାରେ ତହିଁରେ ରକ୍ତ ଉପରକୁଇ ଉଠଇ ତଳକୁ ଖସି ନ ପାରଇ ।

---

## ଶରୀରର ମାନସିକ ଗୁଣ ବିଷୟରେ ।

ଶିଷ୍ୟ । ଶରୀରର ବାହାର ଓ ଅନ୍ତରସ୍ଥ ବିଷୟ ସମସ୍ତ କହିଲ । ଏବେ ଅବଧାନ ଯେବେ ଅନୁଗ୍ରହ କରି ଆତ୍ମାର ବିଷୟ କିଛି କହନ୍ତି ତେବେ ବଡ ଭଲ ହୁଅନ୍ତା ।

ଗୁରୁ । ଶ୍ରବଣ କର । ଆତ୍ମା ମହତ୍ତ୍ୱ ଓ ଐଶ୍ୱର୍ଯ୍ୟରେ ଶରୀରଠାରୁ ଶ୍ରେଷ୍ଠ ଯେହେତୁ ତହିଁରେ ଈଶ୍ୱରଙ୍କର ଦତ୍ତ ଜ୍ଞାନ ଓ ଅମରତ୍ୱ ଗୁଣ ଅଛି ।

ଶିଷ୍ୟ । ଜ୍ଞାନର ଗୁଣ କାହାକୁ ବୋଲି ?

ଗୁରୁ । ଯହିଁରେ ଆମ୍ଭମାନଙ୍କର ବୋଧ, ସନ୍ଦେହ, ବିବେଚନା, ଇତ୍ୟାଦି ଜନ୍ମଇ ତାହାକୁଇ ଜ୍ଞାନ ବୋଲି । ଏହା ବିନୁ ତହିଁରେ ସ୍ମରଣ ଓ ଅନୁଭବ ଆଉ ଦୁଇ ଗୁଣ ଅଛି ।

ଶିଷ୍ୟ । ଅନ୍ତରେ ରାଗ ଅଛି କି ନାହିଁ ?

ଗୁରୁ । ହଁ। ଅଛି, ଯେହେତୁ ଅମ୍ଭେମାନେ ଅନ୍ତରେ ଆନନ୍ଦ, ପ୍ରେମ, ଅଭିଳାଷ, କ୍ରୋଧ, ପ୍ରତ୍ୟାଶା, ଅଭିମାନ, ଇତ୍ୟାଦି କରୁଅଛୁଁ । ଆଉ ଦୟା, ଅନୁଗ୍ରହ, ଭୟ, ଲଜ୍ଜା, ଶୋକ, ଇତ୍ୟାଦି ନାନା ଗୁଣହିଁ ଅଛି ।

ଶିଷ୍ୟ । ରାଗାଦି ଏହି ସମସ୍ତ ଗୁଣ କି ଆମ୍ଭମାନଙ୍କର ହିତର ନିମନ୍ତେ ହୁଅଇ ?

ଗୁରୁ । ହଁ।, ତହିଁରେ ସନ୍ଦେହ କି ? ଯେହେତୁ ଅମ୍ଭେମାନେ ଯେବେ ସେମାନଙ୍କୁ ବଶୀଭୂତ କରି ଚଳିବାକୁ ପାରୁ ତେବେ ସେମାନଙ୍କଠାରୁ ଅନାୟାସେ ସତ୍ପଥରେ ଗମନ କରିବାକୁ ପାରୁ । ପୁଣି ଯେବେ ସେମାନଙ୍କୁ ବଶୀଭୂତ ନ କରି ଅମ୍ଭେମାନେ ସେମାନଙ୍କର ବଶୀଭୂତ ହୋଇ ତେବେ ସେମାନେ କୁପଥଗାମୀ ହୋଇ ଆମ୍ଭମାନଙ୍କର ପ୍ରତିକୂଳାଚରଣ କରିବାକୁ ପ୍ରବୃତ୍ତ ହୁଅନ୍ତି । ଏନିମନ୍ତେ ଯେ ଜନ ଅନ୍ତଗୁଣରେ ପ୍ରତି ପ୍ରବୁଦ୍ଧ କରିବାକୁ ଅସମର୍ଥ ସେ ନିତାନ୍ତ ଭଙ୍ଗା ପାତେର ଓ ଶୂନ୍ୟ ନଗରର ତୁଲ୍ୟ ହୁଅଇ ।

ଶିଷ୍ୟ । ଭଲ, ଅବଧାନ, ଶରୀର ଓ ଅନ୍ତର ଯୋଗ କି ପ୍ରକାରରେ ହୁଅଇ ?

ଗୁରୁ । ଏ ବିଷୟରେ ଅତି ଜ୍ଞାନ ଲୋକମାନେ କିଛି ନିରୂପଣ କରିବାକୁ ପାରନ୍ତି ନାହିଁ ପୁଣି ଅନୁମାନ ହୁଅଇ ଅନ୍ତର ସ୍ଥାନ ମସ୍ତିଷ୍କ ।

ଶିଷ୍ୟ । ପ୍ରତିଦିବସରେ ଲୋକର ମୃତ୍ୟୁ ହେବାରେ କ୍ରମେ୨ ଜଗତ ଶୂନ୍ୟ ହେବାର ଭୟ କି ନୁହଇ ?

ଗୁରୁ । ତହିଁରେ ଭୟ କି ? ଯେହେତୁ ଏହି ଜଗତରେ ଅନୁମାନ ହୁଅଇ ଷାଠିଏ ନିମିଷର ମଧ୍ୟରେ ଯେବେ ଷାଠିଏ ଜଣ ମରନ୍ତି ତେବେ ଷାଠିଏରୁ ଅଧିକ ମନୁଷ୍ୟ ଜନ୍ମନ୍ତି । ସେ ବିଷୟରେ ଏଦେଶର ପଣ୍ଡିତମାନେ ବୋଲନ୍ତି ଯେ ପ୍ରତି ଦିବାରାତ୍ରିରେ ଲକ୍ଷ ସଂଖ୍ୟା କରି ମନୁଷ୍ୟ ଜନ୍ମଇ ଓ ମରଇ । ମାତ୍ର ଯେତେ ଜନ୍ମଇ ତାହାର ମଧ୍ୟରେ ଏକ ଶ ପାଞ୍ଚ ସଂଖ୍ୟା ପୁରୁଷ ପୁଣି ଏକ ଶତ ସଂଖ୍ୟା ସ୍ତ୍ରୀ ଲୋକ ଜନ୍ମଇ । ଯେଣୁ ବାଲ୍ୟାବସ୍ଥାରେ ପୁଣି ଯୁଦ୍ଧ ସ୍ଥଳରେ ପୁରୁଷ ଅଧିକ ମରଇ ଏହି ନିମନ୍ତେ ସ୍ତ୍ରୀଠାରୁ ପୁରୁଷ ଅଧିକ ।

ଶିଷ୍ୟ । ବୋଧ ହୁଅଇ ଗାଁଉଳି ଗାଁଠାରୁ ବଡ଼୨ ନଗରରେ ଅଧିକ ଲୋକର ମୃତ୍ୟୁ ହୁଅଇ ।

ଗୁରୁ । ହଁ। ହୁଅଇ ପ୍ରମାଣ, କାରଣ ଗାଁଉଳି ଗାଁରେ ଯେମନ୍ତ ଉତ୍ତମ ବାୟୁ ବଡ଼୨ ନଗରରେ ସେରୂପ ନୋହେ ଏହି ନିମନ୍ତେ ଅବଶ୍ୟ ପ୍ରଶ୍ୱାସର ବାୟୁ ପରିଷ୍କୃତ ନୁହଇ । ତାହା ଛଡ଼ା ଅନ୍ୟ କାରଣ ଅଛି ଯେ୨ ସ୍ଥାନରେ ନିବିଡ଼ ବସତି ପୁଣି ଅଧିକ ଜନସମୂହ ସେ୨ ସ୍ଥାନରେ କୌଣସି ଡିଁଅରୋଗ ଜନ୍ମିଲେ ଅକସ୍ମାତ ଅନେକର ସେହି ରୋଗ ଜନ୍ମ ପ୍ରାଣର ହାନି କରଇ । ପୁଣି ବଡ଼ ନଗର ହେଉ କିଅବା ଗାଁଉଳିଗାଁ ହେଉ ଅମ୍ଭେମାନେ ଯେ ସ୍ଥାନରେ ବସତି କରୁ ସେ ସ୍ଥାନରେ ଈଶ୍ୱରର କୃପାରୂପ ବାୟୁ ସେବା ଓ ତାହାର ଦୀପ୍ତି ପୁଣି ପୃଥିବୀର ଫଳ ଭୋଗ କରୁ । ଏଣୁ ଅମ୍ଭମାନଙ୍କର ଯେ ଯତ୍କିଞ୍ଚିତ୍ ଅଛି ସେ ସମସ୍ତ ଈଶ୍ୱରଠାରୁ ପ୍ରାପ୍ତ । ଏନିମନ୍ତେ ଯେ ଶରୀର ପୁଣି ଆତ୍ମାକୁ ଈଶ୍ୱରଠାରୁ ପ୍ରାପ୍ତ ହୋଇଅଛୁ

ତହିଁରେ ଅମ୍ଭେମାନେ ଯେମନ୍ତ ତାହାର ସେବା କର ଏହି ଅମ୍ଭ-
ମାନଙ୍କର ନିଯୁକ୍ତ କର୍ତ୍ତବ୍ୟ ।

---

## ଜନ୍ତୁର ବିଷୟ ।

ଶିଷ୍ୟ । ଏବେ ଜନ୍ତୁର ବିଷୟ କିଛି ଶୁଣିବାକୁ ଅମ୍ଭର ବଡ ବାଞ୍ଛା ହୁଅଇ ।

ଗୁରୁ । ଜଳଚର; ଭୂଚର, ଭୂମି ଜଳଚର, ଆକାଶର ଭେଦ-ରେ ଲକ୍ଷ୨ ପ୍ରକାର ଜନ୍ତୁ ଅଛନ୍ତି ପୁଣି ଜଳଚରାଦି ସମସ୍ତ ଜନ୍ତୁହିଁ ମନୁଷ୍ୟ ବଶୀଭୂତ ।

ଶିଷ୍ୟ । ସେମାନେ ମନୁଷ୍ୟ ଅଧୀନ ହୁଅନ୍ତି କିପାଁ ?

ଗୁରୁ । ମନୁଷ୍ୟର ଉପକାରର ନିମନ୍ତେ ହୁଅନ୍ତି । ଦେଖ, ସେ-ମାନେ ଯେବେ ଅଧୀନ ନୁହନ୍ତେ ତେବେ ସେମାନଙ୍କର ଯେ ଶକ୍ତି ଅଛି ତହିଁରେ ମନୁଷ୍ୟର ହିତ ନ କରି ପୁଣି ହିଂସା କରିବାକୁ ପ୍ରବୃତ୍ତ ହୁଅନ୍ତେ ।

ଶିଷ୍ୟ । ଜନ୍ତୁର କେତେ ଜାତି ଅଛି ?

ଗୁରୁ । ଦୁଗ୍ଧପାୟୀ, ଭୂଜଳଚର, ପକ୍ଷୀ, ମତ୍ସ୍ୟ, ପତଙ୍ଗ, କୀଟ, ଏହି ଛ ଜାତିରେ ବିଭକ୍ତ ଅଟଇ ।

ଶିଷ୍ୟ । ମନୁଷ୍ୟର ମତେ କି ସମସ୍ତ ଜନ୍ତୁରଇ ଇନ୍ଦ୍ରିୟ ଅଛି ?

ଗୁରୁ । ହାଁ, ମନୁଷ୍ୟର ପ୍ରାୟେ ଚତୁଷ୍ପାଦରହିଁ ପଞ୍ଚେନ୍ଦ୍ରିୟ ଅଛି ବିଶେଷରେ କେତେକ ଜନ୍ତୁର କୌଣସି୨ ଇନ୍ଦ୍ରିୟ ମନୁଷ୍ୟଠାରୁହିଁ ପ୍ରବଳ । ତାହାର ପ୍ରମାଣ କୁକୁରର ଆଘ୍ରାଣ ଶକ୍ତି ପୁଣି ନେଉଳର ଶ୍ରବଣ ଶକ୍ତି ମନୁଷ୍ୟର ଅଘ୍ରାଣ ଓ ଶ୍ରବଣ ଶକ୍ତିଠାରୁହିଁ ଅଧିକ ।

ଶିଷ୍ୟ । ଏତେ ଜନ୍ତୁର ଭରଣପୋଷଣ ରକ୍ଷଣାବେକ୍ଷଣ କି ପ୍ରକାରେ ହୁଅଇ ?

ଗୁରୁ । ତାହାର ନିମନ୍ତେ ପରମେଶ୍ୱର ନିଜ ଅଚିନ୍ତ୍ୟ ଶକ୍ତିରେ ଏମନ୍ତ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରିଅଛନ୍ତି ଯେ ସବୁ ଖାଦ୍ୟ ଦ୍ରବ୍ୟର ମଧ୍ୟରେ କୌଣସି ବସ୍ତୁରହିଁ କେବେ ଶେଷ ନୁହଇ ।

ଶିଷ୍ୟ । ସେମାନଙ୍କର ବିଷୟରେ ଆହୁରି କିଛି କହିବାକୁ ଅଛି କି ନାହିଁ ?

ଗୁରୁ । ହଁ, ଆପଣା ରକ୍ଷା ନିମନ୍ତେ ପ୍ରତ୍ୟେକ ଜନ୍ତୁରଇ ଅସ୍ତ୍ର ଅଛି । ପୁଣି ସେମାନଙ୍କର ପୀଡା ହେଲେ କାହିଁରେ ସୁସ୍ଥ ହେବେ ତାହା ବୁଝିବାକୁ ପାରନ୍ତି ପୁଣି କେଉଁ ବସ୍ତୁ ସେମାନଙ୍କର ଖାଦ୍ୟ କିଅବା ଅଖାଦ୍ୟ ତାହାଇ ସେମାନଙ୍କର ବୋଧ ଅଛି । ପୁଣି ଜଳରେ କି ପୃଥିବୀରେ ସେମାନଙ୍କର ବାସ କରିବାକୁ ହୁଅଇ ତାହାଇ ସେମାନେ ଜାଣନ୍ତି । ଏହା କେବଳ ନୋହେ, କି ପ୍ରକାରେ ବସା ନିର୍ମାଣ କରିବାକୁ ହୁଅଇ ଏହାଇ ସେମାନଙ୍କର ବୋଧ ଅଛି । ତାହାର ପ୍ରମାଣ ଜଳମାର୍ଜାର ଜନ୍ତୁ ହୋଇ ପ୍ରାୟ ମନୁଷ୍ୟର ନ୍ୟାୟ ଆପଣା ବସା ପ୍ରସ୍ତୁତ କରଇ । ଆଉ ସମସ୍ତ ଜନ୍ତୁଇ ଆପଣା୨ ଶତ୍ରୁ ମିତ୍ର ଚିହ୍ନିବାକୁ ପାରନ୍ତି ପୁଣି ଆପଣା୨ ଜାତିର ରବ ବୁଝିବାକୁ ପାରନ୍ତି ।

ଶିଷ୍ୟ । ସେମାନେ ଯେବେ ଆପଣା୨ ଜାତିର ରବ ବୁଝିବାକୁ ପାରନ୍ତି ତେବେ କି ସେମାନଙ୍କର ବିଶେଷ୨ ଭାଷା ଅଛି ?

ଗୁରୁ । ନାହିଁ, ସେମାନଙ୍କର ରବଇ ବିଶେଷ ଭାଷାର ନ୍ୟାୟ ପ୍ରମାଣ । ଦେଖ ସିଂହ, ଭଲ୍ଲୁକ, କେନ୍ଦୁଅ, ଘୋଡା, ଇତ୍ୟାଦି ଜନ୍ତୁ କୌଣସି୨ ସମୟରେ ବିଶେଷ୨ ଶବ୍ଦ କରନ୍ତି ।

ଶିଷ୍ୟ । ମନୁଷ୍ୟର ନ୍ୟାୟ କି ସେମାନଙ୍କର କ୍ରୋଧ ଅଛି ?

ଗୁରୁ । ହଁ, କେବଳ କ୍ରୋଧ ଅଛି ଏମନ୍ତ ନୋହେ ସ୍ୱାଭାବିକ ସ୍ନେହ, ଆନନ୍ଦ, ଶୋକ, ଦୟା, ବଧଇଚ୍ଛା, ଅସହିଷ୍ଣୁତା, ଇତ୍ୟାଦି ଗୁଣହିଁ ଅଛି । ଏହି ସ୍ଥଳରେ ଆଉ ଏକ ବିଷୟ ତୁମ୍ଭର

ମନୋଯୋଗର ଯୋଗ୍ୟ ଅଟନ୍ତି କି ନାହିଁ ? ପ୍ରତ୍ୟେକ ଜନ୍ତୁର ଯେ ସମସ୍ତ ସ୍ୱାଭାବିକ ଗୁଣ ତାହା ସର୍ବଦା ସମଭାବ ଥାଏ । ଦେଖ, ଘୋଡ଼ା ସମସ୍ତ ସର୍ବଦା ସତେଜ ଓ ଗର୍ବାନ୍ୱିତ ଥାଆନ୍ତି । ପୁଣି ମେଣ୍ଢାଛୁଆମାନଙ୍କର ଯେ କୋମଳ ସ୍ୱଭାବ ଓ ଅହିଂସତା ତାହାଇ ସର୍ବଦା ଥାଏ । ଆହୁରି ଦେଖ, ଠେକୁଆଗଣ ସବୁବେଳେ ସଭୟ ଥାନ୍ତି । ପୁଣି କୁକୁରମାନଙ୍କର ଯେ ମନୁଷ୍ୟର ଉପକାର ନିମନ୍ତେ ସର୍ବଦା ସତର୍କ ଥିବାର ଓ ବିଶ୍ୱସ୍ତ ହେବାର ସ୍ୱାଭାବିକ ଗୁଣ ତାହାଇ ଦେଖ, ସବୁବେଳଇ ସମାନ ଥାଏ ।

ଶିଷ୍ୟ । ଏଥିରେ ଯେ ସମସ୍ତ ଜନ୍ତୁକୁ ଆମ୍ଭମାନଙ୍କର ଅଧୀନ କରିଅଛନ୍ତି ସେହି ସୃଷ୍ଟିକର୍ତ୍ତାର ଧନ୍ୟବାଦ କରିବାର ଆମ୍ଭମାନଙ୍କର ଅତି ଉଚିତ ।

ଗୁରୁ । ହାଁ, ଏହି ସମସ୍ତ ଜନ୍ତୁ ଆମ୍ଭମାନଙ୍କର ହିତର ନିମନ୍ତେ ଜାତ ହୋଇଅଛନ୍ତି ଏହା ଯେବେ ଆମ୍ଭେମାନେ ମନରେ ସ୍ଥିର ରଖି ତେବେ ତାହାଙ୍କର ଧନ୍ୟବାଦ କରି ଆମ୍ଭମାନଙ୍କର ଆଉ ଅଧିକ ଉଚିତ ବୋଧ ହେବ । ଆମ୍ଭମାନଙ୍କର ନିମନ୍ତେ ଯେବେ ସେମାନଙ୍କର ସୃଷ୍ଟି ହୋଇଅଛି ତେବେ ସେମାନଙ୍କର ନିଗ୍ରହ କରିବା ଉଚିତ ନୁହଇ । ଯେହେତୁ ତାହା କଲେ ଈଶ୍ୱରର ଗୋଚରେ ଆମ୍ଭମାନଙ୍କର ଦ୍ରୋହସ୍ୱଭାବ ପ୍ରକାଶ ହୁଅଇ । ପୁଣି ଅତିଶୟ ପରିଶ୍ରମ ଯୁକ୍ତ ଅସାଧ୍ୟ କର୍ମସାଧନରେ ସେମାନଙ୍କୁ ନିଯୁକ୍ତ କରିବାର ଉଚିତ ନୁହଇ । ମାତ୍ର କୌଣସି ପ୍ରକାରେ ସେମାନଙ୍କର ରକ୍ଷଣାବେକ୍ଷଣ ଓ ଭରଣପୋଷଣର ନିମନ୍ତେ ପୁଣି ସେମାନଙ୍କୁ ଆବଶ୍ୟକ ଦ୍ରବ୍ୟ ଦେବାର ଆମ୍ଭମାନଙ୍କର ଉଚିତ । ପଶୁର ପ୍ରତି ଧାର୍ମିକ ଲୋକମାନଙ୍କର ଦୟା କରିବାର ଅତି କର୍ତ୍ତବ୍ୟ ଅଟଇ ।

ଶିଷ୍ୟ । ବନଜାତ ପଶୁରେ ଆମ୍ଭମାନଙ୍କର ଉପକାର କି ?

ଗୁରୁ । ଅନେକ ଉପକାର ଅଛି । ଦେଖ, କେତେଗୁଡ଼ାଏ ବନସ୍ଥ

ପଶୁ ଭୋଜନର ନିମନ୍ତେ ହୁଅଇ ପୁଣି କେତେକ ଅବା ବଂଶର ନିମନ୍ତେ ହୁଅଇ । ଅଉ ବନସ୍ଥ ପଶୁରେ ଅନେକ ହିଂସ୍ର ଜନ୍ତୁର ବୃଦ୍ଧି ହେବାକୁ ନ ପାରଇ । ପୁଣି ମନୁଷ୍ୟମାନେ ଅପଣା ବନ୍ଧୁ-ବାନ୍ଧବ ଓ ସଂସାରଧର୍ମ ପରିତ୍ୟାଗ କରି ସେମାନଙ୍କର ଉପ୍ପରେ ବନବାସ କରିବାକୁ ନ ପାରନ୍ତି । ପୁଣି ସେମାନଙ୍କରଠାରେ ଈଶ୍ୱ-ରଙ୍କ କର୍ମର ମହତ୍ୱ ଓ ନାନା ଭାବ ଦେଖା ହେଉଅଛି । ଯେହେତୁ ଦେଖ, କ୍ଷୁଦ୍ର କୀଟ ଅବଧିର ହସ୍ତି, ସିଂହ, ଗଣ୍ଡା, ଇତ୍ୟାଦି ଅଧିକ୨ ଯେ ସମସ୍ତ ବଡ଼୨ ଜନ୍ତୁ ଅଛନ୍ତି ତାହା ସାକ୍ଷାତ୍ ଦେଖା ହେଉଅଛି । ପୁଣି ପ୍ରତ୍ୟେକ ଜନ୍ତୁମାନଙ୍କୁ ଉଚିତ ଭୋଜନ ଦ୍ରବ୍ୟ ଦେଇ ପର-ମେଶ୍ୱର ପ୍ରତିପାଳନ କରିଅଛନ୍ତି ତାହାଇ ଦେଖା ହେଉଅଛି ।

ଶିଷ୍ୟ । କେତେ ବର୍ଗରେ ପଶୁର ଭେଦ ହୁଅଇ ?

ଗୁରୁ । ଦନ୍ତର ସଂଖ୍ୟା ପୁଣି ଦନ୍ତର ସ୍ଥାନ ପୁଣି ଦନ୍ତର ଅକା-ରରେ ସାତ ବର୍ଗରେ ପଶୁ ବିଭକ୍ତ ହୁଅଇ ।

ଶିଷ୍ୟ । ପ୍ରଥମ ବର୍ଗର ମଧ୍ୟରେ କି୨ ପଶୁ ?

ଗୁରୁ । ମନୁଷ୍ୟ, ବାନର, ବନମନୁଷ୍ୟ, ଲିସର, ବାଦୁଡ଼ି, ଇତ୍ୟାଦି ପ୍ରଥମବର୍ଗର ମଧ୍ୟରେ ହୁଅଇ । ଏମାନଙ୍କର ମୁଖରେ ପା-ଟିର ଚାରି ଦନ୍ତ ସମାନ ହୁଅଇ । ପୁଣି ବକ୍ଷସ୍ଥଳରେ ଦୁଇ ସ୍ତନ ଥାଏ ।

ଶିଷ୍ୟ । ଏ ସମସ୍ତ ପଶୁର କି ମନୁଷ୍ୟର ଦନ୍ତର ନ୍ୟାୟ ଦନ୍ତ ହୁଅଇ ?

ଗୁରୁ । ହାଁ, ପ୍ରାୟ ଏମାନଙ୍କର ସମସ୍ତର ଦନ୍ତ ମନୁଷ୍ୟ ଦନ୍ତର ନ୍ୟାୟ ପ୍ରମାଣ କେବଳ ବାଦୁଡ଼ିର ସେରୂପେ ନୁହଇ ।

ଶିଷ୍ୟ । ମନୁଷ୍ୟ ଯେ ବାନରାଦି ପଶୁର ମଧ୍ୟରେ ଗଣିତ ହୁଅଇ ଏ ବଡ଼ ଦୁଃଖର କଥା ।

ଗୁରୁ । କେହି୨ ମନୁଷ୍ୟକୁ ଏକ ଭିନ୍ନ ବର୍ଗ ଜାଣନ୍ତି ତେବେ-

ଙ୍କେ ହସ୍ତ, ପାଦ, ଅଙ୍ଗୁଳୀ, ନଖ, ଇତ୍ୟାଦ ଅବୟବରେ ମନୁଷ୍ୟଗ-ଣରେ ଓ ଏହ ପଶୁରେ ଭେଦ ନାହିଁ ।

ଶିଷ୍ୟ । ତେବେ କ ଏହ ପଶୁମାନଙ୍କର ସମ୍ମୁଖସ୍ଥିତ ଦୁଇ ଚର-ଣକୁ ଆପଣ ହସ୍ତ ବୋଲନ୍ତ?

ଗୁରୁ । ହଁ, ଆଉ ଚତୁଷ୍ପଦଠାରୁ ଏମାନଙ୍କର ସମ୍ମୁଖସ୍ଥିତ ଦୁଇପଦ ମନୁଷ୍ୟ ହସ୍ତର ସଦୃଶ । ଯେହେତୁ ଦେଖ, ସେମାନେ ସେ ଦୁଇ ହସ୍ତରେ ମନୁଷ୍ୟର ନ୍ୟାୟ ବୃକ୍ଷାରୋହଣ କରବାକୁ ପାରନ୍ତ ପୁଣି ଫଳ ତୋଳି ଧରବାକୁ ପାରନ୍ତ । ତହିଁ ଉତ୍ତାରୁ ସେମାନଙ୍କର କେତେ ଗୁଡ଼ାର ଲାଙ୍ଗୁଡ ଏମନ୍ତ ଶକ୍ତିମାନ ଯେ ତହିଁରେ ସେମାନେ ବୃକ୍ଷର ଶାଖା ବେଷ୍ଟନ କର ଅନାୟାସରେ ଆପଣାମାନଙ୍କୁ ରକ୍ଷା କରନ୍ତ ।

ଶିଷ୍ୟ । ଦ୍ୱିତୀୟ ବର୍ଗର ମଧ୍ୟରେ କେଉଁ ଜନ୍ତୁ? ।

ଗୁରୁ । ହସ୍ତି, ଗଣ୍ଡା, ବରାହ, ପିମ୍ପୁଡ଼ିଖାଇ, ଅଳସପଦ, ଇତ୍ୟାଦ ଦ୍ୱିତୀୟ ବର୍ଗର ମଧ୍ୟରେ । ଏମାନଙ୍କର ମୁଖର ସନ୍ମୁଖ ଭାଗରେ ଦନ୍ତ ନାହିଁ ପୁଣି ପାଦରେ ଖୁରାର ନ୍ୟାୟ ଅତ ତୀକ୍ଷ୍ଣାଗ୍ର କଠିଣ ନଖ ଅଛି ।

ଶିଷ୍ୟ । ଅଳସପଦ ପଶୁ କ ଅତ ଧୀରଗାମୀ ନୋହେ?

ଗୁରୁ । ଆଉ ବର୍ଗଠାରୁ ଦ୍ୱିତୀୟ ବର୍ଗର ପଶୁ ମାନଙ୍କର ଧୀର-ଗାମୀ ପ୍ରମାଣ ବଶେଷରେ ଅଳସପଦ, ଯେଣୁ ସେ ଏକ ଦବସରେ ଶଏ ହାତର ଗମନ ନ କରନ୍ତ । ପ୍ରାୟ ବୃକ୍ଷର ଉପର ଭାଗରେଇ ଥାଆନ୍ତ । ପୁଣି ସର୍ବଦାଇ କାତର ଅତ ଅଳସ୍ୟଯୁକ୍ତ ହୋଇ ଗମ-ନାଗମନ କରନ୍ତ ପୁଣି ଯେ ସମୟ ବୃକ୍ଷର ଉପର ଭାଗରେ ଭ୍ରମଣ କରନ୍ତ ସେ କାଳରେ ଶୀଘ୍ର ଚଳନ୍ତ । ଏମାନଙ୍କର ରୋଦନର ଶବ୍ଦ ଅତ ଆଶ୍ଚର୍ଯ୍ୟ ପୁଣି ଏମାନଙ୍କର ଚକ୍ଷୁର ଜଳ ପ୍ରତ୍ୟକ୍ଷ ଦେଖା ଯାଏ ।

ଶିଷ୍ୟ । ତୃତୀୟ ବର୍ଗର ମଧ୍ୟରେ କେଉଁ ପଶୁ ଅଛ?

ଗୁରୁ । ତୃତୀୟ ବର୍ଗର ମଧ୍ୟରେ ସମସ୍ତ ହିଂସ୍ର ଜନ୍ତୁ । ଯେ-

ମାନଙ୍କର ନଖ ସୁତୀକ୍ଷ୍ଣ ଓ ବଙ୍କା ହୁଅଇ ପୁଣି ସମ୍ମୁଖର ଦନ୍ତ ଅତି ବକ୍ରାକାର ପୁଣି ଚକ୍ଷୁ ପ୍ରଜ୍ୱଳିତ । ସେମାନଙ୍କର ଏମନ୍ତ ବେଗ ଓ ଶକ୍ତି ଯେ ଅକସ୍ମାତ୍ ଆକ୍ରମଣ କରି ଅନ୍ୟଙ୍କୁ ଧରିବାକୁ ପାରନ୍ତି ।

ଶିଷ୍ୟ । ସେମାନଙ୍କର ଦନ୍ତର କିଛି ବିଶେଷ ଅଛି କି ନାହିଁ ?

ଗୁରୁ । ହାଁ, ସେମାନଙ୍କର ଦନ୍ତର ଉପର ପାଟିର ସମ୍ମୁଖ ଭାଗରେ ଛଅଟା ଦନ୍ତ, ତହିଁରେ ଗୋଟାଏ ବଡ । ଆଉ ଦୁଇ ପାଟିର ମଧ୍ୟରେ ଦୁଇ୨ ତୀକ୍ଷ୍ଣ କୁକ୍କୁରର ଦନ୍ତ ଅଛି ଏହି ବର୍ଗର ମଧ୍ୟରେ କୁକ୍କୁର, ବିରାଡି, ଭାଲୁ, ଜଳମାର୍ଜାର, ଛୁଚୁନ୍ଦରୀ, ଶଲ୍ଲକୀ, ଇତ୍ୟାଦି ଜାଣିବ ।

ଶିଷ୍ୟ । ସିଂହ, ବ୍ୟାଘ୍ର, କେନ୍ଦୁଆ, ଏମାନଙ୍କର ବିଷୟ ଆପଣ କିଛି ନ କହିଲ । ଏ ସମସ୍ତ କି ଏହି ବର୍ଗର ମଧ୍ୟରେ ନାହାନ୍ତି ?

ଗୁରୁ । ହାଁ, ଏହି ବର୍ଗର ମଧ୍ୟରେ ପ୍ରମାଣ । ସିଂହ, ବ୍ୟାଘ୍ର ଏ ଦୁଇ ଜନ୍ତୁ ବିରାଡି ବିଶେଷ ବୋଲାଯାଏ ଓ କେନ୍ଦୁଆ, ହେଟାବାଘ ଏ ଦୁଇ କୁକ୍କୁର ବିଶେଷ ବୋଲାଯାଏ ଏହି ନିମନ୍ତେ ଏମାନଙ୍କର ବିଷୟ କିଛି ନ କହିଲୁଁ ।

ଶିଷ୍ୟ । କାହିଁରେ ଚତୁର୍ଥ ବର୍ଗ ଜନ୍ତୁର ଭେଦ ହୁଅଇ ପୁଣି ତାହାର ମଧ୍ୟରେଇ ଅବା କେତେ ପ୍ରକାର ଜନ୍ତୁ ଅଛି ?

ଗୁରୁ । ଓଧ, ମୂଷା, ଗୁଣ୍ଡିଚିମୂଷା, ଠେକୁଆ, ଇତ୍ୟାଦି ଏମାନଙ୍କର ଦୁଇ ପାଟିର ସମ୍ମୁଖରେ ଦୁଇ୨ ତୀକ୍ଷ୍ଣ ଦନ୍ତ ଥାଏ ।

ଶିଷ୍ୟ । ପଞ୍ଚମ ବର୍ଗର ମଧ୍ୟରେ କେଉଂ୨ ପଶୁ ?

ଗୁରୁ । ଗୋରୁ, ମେଷ, ଛେଳି, ମୃଗ, ଓଟ, ଇତ୍ୟାଦି ଯେଉଂମାନେ ଦୁଇଖୁରି ପଶୁ ସେମାନେ ଏହି ବର୍ଗର ମଧ୍ୟରେ ଗଣିତ ହୁଅନ୍ତି । ପୁଣି ସେମାନଙ୍କର ଉପର ପାଟିର ସମ୍ମୁଖରେ ଦନ୍ତ ନ ଥାଏ ମାତ୍ର ତଳ ପାଟିରେ ଅଠୁଟା ଦନ୍ତ ଥାଏ । ପୁଣି ସେମାନେ ପ୍ରଥମ ଭୋଜନର ଦ୍ରବ୍ୟ ଉଦରସ୍ଥ କରି ଗଳ କମ୍ବଳର ମଧ୍ୟରେ

ରଖନ୍ତି ପଛେ ବିଶ୍ରାମ ସମୟରେ ଅନ୍ନେ ଉଦ୍ଗାର ଓ ଚର୍ବଣ କରି ଉଦରସ୍ଥ କରନ୍ତି ।

ଶିଷ୍ୟ । ଏହି ସମସ୍ତ ପଶୁର ଖୁରା କି ଚିରା ନୋହେ ?

ଗୁରୁ । ହଁ, ଦ୍ୱିଖଣ୍ଡ ପ୍ରମାଣ । ସେମାନେ ପ୍ରାୟ ସ୍ୱାଭାବିକ ଅହିଂସକ ପୁଣି କେହି ତାଡ଼ନାଦି କଲେ କଠିଣ ଶୃଙ୍ଗଯୁକ୍ତ ମସ୍ତକରେ ହିଂସା କରିବାକୁ ଉଦ୍ୟତ ହୁଅନ୍ତି ।

ଶିଷ୍ୟ । ଷଷ୍ଠ ବର୍ଗର ମଧ୍ୟରେ କେତେ ପ୍ରକାର ଜନ୍ତୁ ଅଛି ସେମାନଙ୍କର ବିଶେଷ ଚିହ୍ନ ଅବା କି ?

ଗୁରୁ । ଷଷ୍ଠ ବର୍ଗର ମଧ୍ୟରେ ଗଣ୍ଡା ଗୃହ ଅଛି ଅର୍ଥାତ୍ ଘୋଡ଼ା, ସିନ୍ଧୁଘୋଡ଼ା, ଶୂକର, ପୂଡ଼ଶୂକର ଅଛି । ଏହି ଗୃହ ଜନ୍ତୁର ଦୁଇ ପାଟିରେ ଦୁଇରୁ ଅଧିକ ଦନ୍ତ ଅଛି ପୁଣି ସେମାନେ ଶୃଙ୍ଗହୀନ ଅଟନ୍ତି ।

ଶିଷ୍ୟ । ସପ୍ତମ ବର୍ଗ ଜନ୍ତୁର ବିଶେଷ ଚିହ୍ନ କି ?

ଗୁରୁ । ସେମାନଙ୍କର ହସ୍ତ ପାଦାଦି ନାହିଁ ଏହି ବିଶେଷ ଚିହ୍ନ । ଏହି ସପ୍ତମ ବର୍ଗର ମଧ୍ୟରେ ତିମି, ଶୁଶୁକ, ଇତ୍ୟାଦି ଜଳଚର ଜନ୍ତୁ ଜାଣିବ ।

ଶିଷ୍ୟ । ଏମାନେ କି ମତ୍ସ୍ୟ ନୁହନ୍ତି ?

ଗୁରୁ । ବାହାରେ ମତ୍ସ୍ୟର ନ୍ୟାୟ ପ୍ରମାଣ ପୁଣି ଅନ୍ତରରେ ଚତୁଷ୍ପଦ ପଶୁର ତୁଲ୍ୟ ହୋଇ ଜଳ ମଧ୍ୟରେ ବାସ କରି ନିଜ ସ୍ତନ ଦୁଗ୍ଧରେ ଆପଣା ଶିଶୁ ପାଳଣ କରନ୍ତି ପୁଣି ଫୁସ୍ଫୁସିରେ ନିଶ୍ୱାସ ପ୍ରଶ୍ୱାସ ଛାଡ଼ନ୍ତି ।

ଶିଷ୍ୟ । ଅବଧାନ ଅନୁଗ୍ରହ କରି ଯେବେ ସେ ତିମି ମତ୍ସ୍ୟର ବିଷୟ କିଛି କହନ୍ତି ତେବେ ବଡ଼ ଅହ୍ଲାଦ ପାଇ ।

ଗୁରୁ । ଶ୍ରବଣ କର । ତିମି ମତ୍ସ୍ୟ ଅତିବଡ଼ । ସେ ଦୀର୍ଘରେ ପ୍ରାୟ ବାଅନ ହାତ ଓ ଉଚ୍ଚରେ ଦ୍ୱାଦଶ ହାତ ପରିମାଣରେ ବୃଦ୍ଧି ପାଏ

ଆଉ ସେମାନେ ଏମନ୍ତ ବଲବାନ ଯେ ପୁଚ୍ଛ ଠେଷିରେ ଅନାୟାସେ ନୌକା ଉଲଟାଇ ପକାଇ ପାରନ୍ତି । ସେମାନେ ଉତ୍ତର ଦକ୍ଷିଣ କେନ୍ଦ୍ର ସାଗରର ନିକଟରେ ବାସ କରନ୍ତି ପୁଣି ପୁଚ୍ଛ ଦେଇ ଜଲରେ ଗମନାଗମନ କରନ୍ତି । ଯେ ସମୟରେ ସେମାନେ ବେଗରେ ଗମନ କରନ୍ତି ସେ କାଲରେ ସ୍ରୋତର ନ୍ୟାୟ ଜଲର ଧାରା ବହଇ ତାହା ଦେଖି ଜାହାଜୀ ଲୋକମାନେ ସେମାନଙ୍କର ସ୍ଥାନ ନିଶ୍ଚୟ କରିବାକୁ ପାରନ୍ତି । ଆଉ ସେମାନଙ୍କର ମୁଖ ଅତି ବଡ ପ୍ରମାଣ ପୁଣି ଗଳାର ରନ୍ଧ୍ର ଅତି ସରୁ । ତାର ମୁଖର ଉପର ପାଟିରେ ଦନ୍ତ ନାହିଁ ପୁଣି ମାଡିରେ ଅତି କଠିଣ ବଡ ଅସ୍ଥି ଅଛି, ସେ ଅସ୍ଥି ଗଜଦନ୍ତର ନ୍ୟାୟ ମୂଲ୍ୟବାନ ହୁଅଇ । ଯେ ସମୟରେ ମୁଖ ବିସ୍ତାର କରି ବେଗରେ ଗମନ କରନ୍ତି ସେ କାଲରେ ବହୁତ୍ କ୍ଷୁଦ୍ର ମତ୍ସ୍ୟ ସେମାନଙ୍କର ମୁଖ ମଧ୍ୟରେ ପ୍ରବେଶ ହୁଅନ୍ତି ତହିଁରେ ପାଟୀ ବୁଜିକରି ସେ ସମସ୍ତ ଗିଳନ୍ତି ଏହିରୂପେ ସେମାନଙ୍କର ଆହାର ହୁଅଇ । ଆଉ ସେମାନେ ଫୁସ୍ଫୁସିରେ ବାୟୁ ଗ୍ରହଣ କରନ୍ତି ଏହି ନିମନ୍ତେ ସବୁବେଳେ ଜଲ ମଧ୍ୟରେ ଡୁବି ନ ଥାଇ ପ୍ରାୟ ଦଣ୍ଡର ମଧ୍ୟରେ ଦୁଇଥର ମୁଖ ଭସାଇ ଉଠନ୍ତି । ପୁଣି ସେହି ସମୟରେ ଉଦରସ୍ଥ ସମସ୍ତ ଜଲ ମସ୍ତକର ରନ୍ଧ୍ର ଦେଇ ବାହାର କରି ପକାନ୍ତି । ପୁଣି ସେ କାଲରେ କେହି ଯେବେ ଦୂରରେ ଥାଇ ଦଆଇ ତେବେ ପ୍ରବଲ ବତାସର ନ୍ୟାୟ ଶବ୍ଦ କରନ୍ତି । ଏହି ତମି ମତ୍ସ୍ୟ ଅତି କୋମଲ ସକାଶେ କେବେ୍ କ୍ଷୁଦ୍ର ମତ୍ସ୍ୟମାନେ ସେମାନଙ୍କର କ୍ଳେଶ ଜନ୍ମାନ୍ତି । ସେମାନେ ପ୍ରସବ ସମୟରେ ଏକ ସନ୍ତାନ ମାତ୍ର ପ୍ରସବ କରନ୍ତି ପୁଣି ସନ୍ତାନ ମାତାରୁ ପ୍ରତି ଏକକୁଅରେକ ସେମାନଙ୍କର ଏମନ୍ତ ସ୍ନେହ ଯେ ପ୍ରାଣାନ୍ତରେହେଁ କଦାଚିତ୍ ବିଚ୍ଛେଦ ନୁହନ୍ତି ।

ଶିଷ୍ୟ । ତେବେ ସେମାନେ କି ପ୍ରକାରେ ଧରା ପଡନ୍ତି ?

ଗୁରୁ । ଜାହାଜି ଲୋକମାନେ ସେମାନଙ୍କର ସ୍ଥାନ ନିଶ୍ଚୟ କରି

ନିକଟରେ ଗମନ କରି ଟେଁଠା ମାରି ବିନ୍ଧନ୍ତି ତହିଁରେ ସେ ମାଛ ଗଭୀର ଜଳରେ ମଗ୍ନ ହୁଅଇ । କିଛି କାଳ ବିଳମ୍ବରେ ନିଶ୍ୱାସ ତ୍ୟାଗ କରିବା ପାଇଁ ଭାସି ଉଠିଲେ ସେହିକ୍ଷଣି ତାହାର ଉପରେ ଆଉ ଥରେ ଟେଁଠା ମାରନ୍ତି । ତହିଁରେ ଅତିଶୟ ରକ୍ତ ବାହାର ହେବାରେ ତିମି ପ୍ରାଣ ତ୍ୟାଗ କରି ଭାସି ଉଠଇ । ଏହି ପ୍ରକାରେ ଏକ ବର୍ଷର ମଧ୍ୟରେ ପ୍ରାୟ ଦୁଇ ସହସ୍ର ମାଛ ଧରା ହେଉଅଛି ।

ଶିଷ୍ୟ । ତିମି ମତ୍ସ୍ୟଠାରୁ ଉପକାର କି?

ଗୁରୁ । ଅନେକ ଉପକାର ଅଛି । ଦେଖ, ତାହାର ମାଂସରୁ ତେଲ ଜନ୍ମଇ ପୁଣି ତାହାର ମାଡ଼ିର ଅସ୍ଥି ନାନା କର୍ମରେ ଲାଗଇ । ଏଥିରେ ସେହି ଏକ ମତ୍ସ୍ୟର ମୂଲ୍ୟ ପ୍ରାୟ ଦଶ ହଜାର ଟଙ୍କା ହୁଅଇ ।

ଶିଷ୍ୟ । ତିମି ଭିନ୍ନ ଆଉ କୌଣସି ଅସାଧାରଣ ଜନ୍ତୁ ଅଛି?

ଗୁରୁ । ଭୂଜଳଚର ମାନେଇ ଅସାଧାରଣ ଜନ୍ତୁ ଯେହେତୁ ସେମାନଙ୍କର ଫୁସ୍ଫୁସି ଚତୁଷ୍ପଦ ପଶୁ କି ପକ୍ଷୀ କି ମତ୍ସ୍ୟ କୌଣସି ସାଧାରଣ ଜନ୍ତୁର ସଦୃଶ ନୋହେ ପୁଣି ଆଂସିକ ଦୁଇର ନ୍ୟାୟ ହୁଅଇ ଏହି ନିମନ୍ତେ ଚତୁଷ୍ପଦର ତୁଲ୍ୟ ଭୂମିରେ ପ୍ରାଣ ଧାରଣ କରିବାକୁ ପାରନ୍ତି ପୁଣି ମତ୍ସ୍ୟର ପରି ଜଳରେଇ ପ୍ରାଣ ଧାରଣ କରିବାକୁ ପାରନ୍ତି ।

ଶିଷ୍ୟ । ଭୂଜଳଚର ଜନ୍ତୁର କେତେ ବର୍ଗ ଆଉ ସେମାନଙ୍କର ଚିହ୍ନ ଅବା କି?

ଗୁରୁ । ସେମାନେ ଦୁଇ ବର୍ଗରେ ବିଭିନ୍ନ ହୁଅନ୍ତି । ପ୍ରଥମ ବର୍ଗର ମଧ୍ୟରେ କଚ୍ଛପ, ବେଙ୍ଗ, ଗୋଧିକା, କୁମ୍ଭୀର, ଇତ୍ୟାଦି ଗମନ-ଶୀଳ ଜନ୍ତୁ ଏହି ସମସ୍ତ ଜନ୍ତୁର ଚାରି ଚରଣ ପୁଣି କଣ୍ଠିର ରନ୍ଧ୍ରମାନ ଅଛି ପୁଣି ପଡ଼ା ନାହିଁ । ଦ୍ୱିତୀୟ ବର୍ଗର ମଧ୍ୟରେ ସର୍ପଗଣ ସେମା-ନଙ୍କର ଚରଣ ନାହିଁ ପୁଣି ଡମ୍ବ ଶିକୁଳିର ନ୍ୟାୟ ଗୁନ୍ଥା ହୁଅଇ ।

---

## ପକ୍ଷିର ବିଷୟ ।

ଶିଷ୍ୟ । ଅବଧାନ ଅନୁଗ୍ରହ କରି ଏବେ ପକ୍ଷୀ ଜାତିର ବିଷୟ କିଛି ବୋଲନ୍ତୁ ଯେହେତୁ ସେମାନଙ୍କର ମଧୁର ଧ୍ୱନିରେ ଆମ୍ଭର ବଡ ସନ୍ତୋଷ ଜନ୍ମଇ ।

ଗୁରୁ । ତୁମ୍ଭେ ଯେବେ ସେହି ସନ୍ତୋଷର ବାଞ୍ଛା କର ତେବେ ଅତି ପ୍ରାତଃକାଳେ ନିଦ୍ରାରୁ ଉଠ ।

ଶିଷ୍ୟ । ଆମ୍ଭେ ପ୍ରତ୍ୟହଇ ପ୍ରାତଃକାଳରେ ନିଦ୍ରାରୁ ଉଠି ଥାଇ ତାହା କେବଳ ସୁସ୍ଥତାର ନିମନ୍ତେ ନୋହେ ପୁଣି ଆନନ୍ଦର ନିମନ୍ତେଇ ପ୍ରମାଣ

ଗୁରୁ । ତୁମ୍ଭେ ଯେ ପ୍ରତିଦିନ ପ୍ରାତଃକାଳରେ ନିଦ୍ରାରୁ ଉଠ ଏ ଆମ୍ଭର ନିତାନ୍ତ ବାଞ୍ଛା ଯେଣୁ ପାଠ, ଧ୍ୟାନ, ବିବେଚନାଦି କରିବାର ସେ ଯୋଗ୍ୟ ସମୟ ।

ଶିଷ୍ୟ । ଆମ୍ଭେ ଉଠିବାକୁ ଚେଷ୍ଟା କରିବା ପୁଣି ଏକ୍ଷଣରେ କିରୂପେ ପକ୍ଷିଗଣକୁ ଚିହ୍ନିବାକୁ ହୁଅଇ ତାହା ଅନୁଗ୍ରହ କରି ବୋଲନ୍ତୁ ।

ଗୁରୁ । ଅଣ୍ଡରୁଁ ଓ ପକ୍ଷରୁଁ ଚିହ୍ନିବାକୁ ହୁଅଇ ଆଉ ସେମାନଙ୍କର ଅଗ୍ରସ୍ଥିତ ଦୁଇ ଗୋଡର ବଦଳେ ଦୁଇ ପକ୍ଷ ହୋଇଅଛି ।

ଶିଷ୍ୟ । ପକ୍ଷୀ ସମସ୍ତ କେତେ ବର୍ଗରେ ବିଭିନ୍ନ ପୁଣି ସେମାନଙ୍କର ବିଶେଷ ଚିହ୍ନ ବା କି?

ଗୁରୁ । ସେମାନେ ଛ ବର୍ଗରେ ବିଭିନ୍ନ ହୁଅନ୍ତି ପୁଣି ଥଣ୍ଟରେ ସେମାନଙ୍କର ବିଶେଷ ବୋଧ ହୁଅଇ ।

ପ୍ରଥମ ବର୍ଗର ମଧ୍ୟରେ ଗୃଧ୍ର, ଚିଲ, ଶ୍ୟେନ, ଇତ୍ୟାଦି ହିଂସ୍ର ପକ୍ଷୀ ସମସ୍ତ ସେମାନଙ୍କର ଥଣ୍ଟ ବକ୍ରାକାର ଲଗୀ ପରି ହୁଅଇ ।

ଦ୍ୱିତୀୟ ବର୍ଗର ମଧ୍ୟରେ କାକ, ଡାମରାକାକ, ଘୋଡା, ଇତ୍ୟାଦି । ଏମାନଙ୍କର ଅଣ୍ଡା ଅଳ୍ପ ବକ୍ର ହୁଅଇ ।

ତୃତୀୟ ବର୍ଗର ମଧ୍ୟରେ ଯେ ସମସ୍ତ ପକ୍ଷୀ ସେମାନଙ୍କର ଅଣ୍ଡା ଉପରଭାଗ ନିର୍ମଳ ଓ ଅଗ୍ରଭାଗ କଚ୍ଛ ଓଣାର ପୁଣି ଚର୍ମରେ ଅଚ୍ଛାଦିତ ହୁଅଇ ଯେମନ୍ତ ହଂସ, ରାଜହଂସ, ସାରସ, ଇତ୍ୟାଦି ।

ଚତୁର୍ଥ ବର୍ଗ ପକ୍ଷିର ଅଣ୍ଡା ଖଡକାର ଅଚ୍ଛିତ ଯେମନ୍ତ ବକ, କାଣ୍ଡିବକ, ମାଣିକଯୋଡଣ୍ଠ, ଇତ୍ୟାଦି ଜାଣିବ ।

ପଞ୍ଚମ ବର୍ଗଭୁକ୍ତ ପକ୍ଷିଗଣର ଅଣ୍ଡା ବକ୍ର ଓ ତଳର ଅଣ୍ଡାଠାରୁ ଉପର ଅଣ୍ଡା ଖଣ୍ଡ କଚ୍ଛ ଦୀର୍ଘ ଓ ବଙ୍କା ହୁଅଇ । ଏହି ବର୍ଗର ମଧ୍ୟରେ ଉଠପକ୍ଷୀ, ମୟୂର, ଇତ୍ୟାଦି ।

ଷଷ୍ଠ ବର୍ଗର ମଧ୍ୟରେ ଘୁଘୁ, ଭାରଇ, ବୁଲବୁଲ, ଇତ୍ୟାଦି । ସେମାନଙ୍କର ଅଣ୍ଡା ତ୍ରିକୋଣାକାର ହୁଅଇ ।

ଶିଷ୍ୟ । ପକ୍ଷିଗଣର ଜନ୍ମ ଓ ଆକାରର ବିଷୟରେ କି କୌଣସି ବିଶେଷ କଥା ଅଚ୍ଛି ଯେ ତାହା ବିବେଚନାର ଯୋଗ୍ୟ ହୁଅଇ ?

ଗୁରୁ । ହଁା, ଯେହେତୁ ଅଣ୍ଡାର ଶସ୍ୟଠାରୁ ସେମାନଙ୍କର ଜନ୍ମ ହୁଅଇ । ପକ୍ଷ ଓ ଶରୀର ଦୁଇର ତାପରେ ଅଣ୍ଡାର ଶସ୍ୟ ପକ୍ଷୀର ଆକୃତି ବିଶେଷ ହୋଇ ଜୀବ ଉତ୍ପନ୍ନ ହୁଅଇ । ଏ କି ସାମାନ୍ୟ ଆଶ୍ଚର୍ଯ୍ୟ ? ଆଉ ଏଥିରେହେଁ ଈଶ୍ୱରର ନିପୁଣତା ଓ ପାରକତା ପ୍ରକାଶ ହେଉଅଚ୍ଛି ଯେ ସେମାନେ ଯେମନ୍ତ ଉଡିବାକୁ ପାରନ୍ତି ଏହିନିମନ୍ତେ ସେମାନଙ୍କର ଆକାର ଓ ପକ୍ଷି ସୁନ୍ଦରରୂପରେ ନିର୍ମିତ ହୋଇଅଚ୍ଛି । ଭୂଚର ଜନ୍ତୁଠାରୁ ସେମାନଙ୍କର ଶରୀରର ଅସ୍ଥି ଅତି ସୂକ୍ଷ୍ମ ସକାଶେ ସେମାନେ ହାଲୁକା ହୋଇ ଅନାୟାସରେ ଆକାଶମଣ୍ଡଳରେ ଉଡନ୍ତି । ଆଉ ସେମାନଙ୍କର ଶରୀରାସ୍ଥିର ସୂକ୍ଷ୍ମତା ସକାଶେ ସେମାନେ ଯେମନ୍ତ ଦୁର୍ବଳ ନୁହନ୍ତି ଏକାରଣ ସେମାନଙ୍କର ଅସ୍ଥିଗତ ସାର ସବଳ ଓ କଠିଣ ହୋଇଅଚ୍ଛି ।

ସେମାନେ ଆପଣା୨ ଥଣ୍ଟର ଅଗ୍ରଭାଗର ସୂକ୍ଷ୍ମତାରେ ଆକାଶ ପଥରେ ଗମନାଗମନ କରିବାକୁ ପାରନ୍ତି ଏହି ଏକ ପୁଣି ତାହା ଛଡ଼ା ଅନ୍ୟର ଏକ କଥା ପକ୍ଷିର ବିଷୟରେ ବିବେଚନାର ଯୋଗ୍ୟ ଅଛି ।୩ ଦେଖ, ସେମାନେ ଯେମନ୍ତ ଅନାୟାସରେ ଉଡ଼ି ପାରନ୍ତି ବିଶେଷ-ରେ କୌଣସି୨ ପକ୍ଷୀ ଯେମନ୍ତ ଅତି ବେଗେ ଉଡ଼ିବାକୁ ପାରନ୍ତି ଏହିନିମନ୍ତେ ସେମାନଙ୍କର ପକ୍ଷି ଅତି ସୁନ୍ଦର ରୂପ ନିର୍ମିତ ହୋଇ-ଅଛି । ପୁଣି ଆମ୍ଭେମାନେ ସର୍ବଦା ସେମାନଙ୍କୁ ଉଡ଼ିବାକୁ ଦେଖୁଅଛୁଁ ଏହିନିମନ୍ତେ ସାଧାରଣ ବସ୍ତୁର ନ୍ୟାୟ ତାହା ଆଶ୍ଚର୍ଯ୍ୟ ବୋଧ ନୁହଇ ।

ଶିଷ୍ୟ । ଆମ୍ଭେମାନେ ଯେ ନିଶ୍ଚିନ୍ତ ହୋଇ ଅନାୟାସରେ ସର୍ବତ୍ର ଗମନାଗମନ କରିବାକୁ ପାରୁ ଏବିଷୟରେ ଈଶ୍ୱରର ନିପୁଣତା ଓ ଅନୁଗ୍ରହ ପ୍ରକାଶ ଦେଖି ଆମ୍ଭମାନଙ୍କର ଆଶ୍ଚର୍ଯ୍ୟ ବୋଧ କରିବାର ଉଚିତ ପ୍ରମାଣ ପୁଣି ଆମ୍ଭମାନଙ୍କର ଗତିଠାରୁଇ ପକ୍ଷୀର ଗତି ଅତି ଆଶ୍ଚର୍ଯ୍ୟ । ଏନିମନ୍ତେ ସେମାନଙ୍କର ପକ୍ଷିର ବିଷୟ କିରୂପରେ ଆକାଶ-ମଣ୍ଡଳରେ ଗମନ ଓ ତା ମଧ୍ୟରେ ସ୍ଥିର ଥିବାର ଏହି ସମସ୍ତ ବିଷୟ ଶ୍ରବଣ କରିବାକୁ ଆମ୍ଭର ବଡ଼ ବାଞ୍ଛା ହୁଅଇ ।

ଗୁରୁ । ତୁମ୍ଭେ ଯେ ଆପଣା ଜ୍ଞାନ ବୃଦ୍ଧି କରିବାକୁ ଇଚ୍ଛା କରୁ-ଅଛ ଏ କଥାରେ ଆମ୍ଭେ ବଡ଼ ସନ୍ତୁଷ୍ଟ ହେଲୁଁ ପୁଣି ତୁମ୍ଭ ବୟସ ଅଧିକ ହେଲେ ତାହା ସୁନ୍ଦରରୂପେ ବୁଝିବାକୁ ପାରିବ ଏ କଥା ପୂର୍ବରେ ତୁମ୍ଭକୁ ଏକ ଥରେ କହିଅଛୁଁ ।

ଶିଷ୍ୟ । ହଁ, ଏହା ହେବାକୁ ପାରଇ । ଯାହା ହେଉ ଏବେ ଅନୁଗ୍ରହ କରି ଆମ୍ଭକୁ ଆଉ କିଛି ବୋଲନ୍ତୁ ।

ଗୁରୁ । ପକ୍ଷିର ରବରେ ତୁମ୍ଭର ବଡ଼ ସନ୍ତୋଷ ଜନ୍ମଇ ଏ କଥା ତୁମ୍ଭେ ପୂର୍ବରେ କହିଲ । ମାତ୍ର ଏମନ୍ତ କ୍ଷୁଦ୍ର ଜନ୍ତୁର କୋମଳ କଣ୍ଠରୁ ଯେ ନାନା ପ୍ରକାର ମଧୁରଧ୍ୱନି ବାହାର ହୁଅଇ ଏଥିରେ

କି ତୁମ୍ଭର ଆଶ୍ଚର୍ଯ୍ୟ ବୋଧ ନୁହଇ? ଦେଖ, ଏମନ୍ତ ବଡ ଜନ୍ତୁ ଯେ ଷଣ୍ଢ ସେ କେବଳ ଘୋରତର ଗମ୍ଭୀର ନାଦ କରଇ। ତାହା ଛଡା ପକ୍ଷିର ବିଷୟରେ ଅଦ୍ଭୁତ ଏହି ଏକ କଥା କହିବାର ଅଛି ଯେ ସେମାନେ ବନର ମଧ୍ୟଦେଇ ଉଡଲେହେଁ ସେମାନଙ୍କର କୌଣସି କ୍ଷତି ନୁହଇ। କାରଣ ସେମାନଙ୍କର ନୟନରେ ମନୁଷ୍ୟ ଚକ୍ଷୁର ଅଗୋଚର ଏମନ୍ତ ଆବରଣ ଚର୍ମ ଥିବାରେ ତହିଁରେ ସେମାନଙ୍କର ଦୃଷ୍ଟିର ବ୍ୟାଘାତ ନ ଜନ୍ମଇ। ସେମାନଙ୍କର ଦୂର ଦର୍ଶନରେ ତାହାର ପ୍ରମାଣ ହୋଇଅଛି। ଆଉ ସେମାନଙ୍କର କର୍ଣ୍ଣ କେବଳ ରନ୍ଧ୍ର ମାତ୍ର ହେଲେହେଁ ରୋମରେ ଆଚ୍ଛନ୍ନ ସକାଶେ ଉଡିବାର କାଳରେ ବାୟୁରେ ଶ୍ରବଣର ବିଘ୍ନ ନ ଜନ୍ମଇ।

ଶିଷ୍ୟ। ଭଲ ଅବଧାନ, ଯହିଁରେ ଖାଦ୍ୟଦ୍ରବ୍ୟ ଚୋବା ଯାଏ ଏମନ୍ତ ଦନ୍ତ ପକ୍ଷିମାନଙ୍କର ନ ଦେଖି।

ଗୁରୁ। ହଁ, ଦନ୍ତ ନାହିଁ ପ୍ରମାଣ ମାତ୍ର ଖାଦ୍ୟ ବସ୍ତୁ ଖଣ୍ଡ୨ କରିବାର ନିମନ୍ତେ ସେମାନଙ୍କର ଥଣ୍ଟ ଅଛି। ଜଳର ମଧ୍ୟରୁ ଯେଉଂମାନେ ଆହାର ସଞ୍ଚୟ କରନ୍ତି ସେମାନଙ୍କର ଥଣ୍ଟ ଦୀର୍ଘ ପୁଣି ଯେଉଂମାନେ ଧାନ୍ୟାଦି ଶସ୍ୟ ଭକ୍ଷଣ କରନ୍ତି ସେମାନଙ୍କର ସାନ ଥଣ୍ଟ ଆଉ ବଡ଼୨ ପକ୍ଷିମାନଙ୍କର ଲୌହବତ୍ କଠିଣ ଥଣ୍ଟ ହୁଅଇ।

ଶିଷ୍ୟ। ଆହାରର ଅପ୍ରାପ୍ତିରେ କେତେକ ପକ୍ଷୀ କି ନ ମରନ୍ତି?

ଗୁରୁ। ଏମନ୍ତ କଦାଚିତ୍ ଘଟଇ ପ୍ରାୟ ଆହାର ବିନୁ କେହି ନ ମରନ୍ତି ଏହା ଆମ୍ଭର ନିଶ୍ଚୟ ଅଛି। ବରଞ୍ଚ ଯେ ପକ୍ଷିଗଣ ଶୀତକାଳର ନିମନ୍ତେ ଖାଦ୍ୟଦ୍ରବ୍ୟ ସଞ୍ଚୟ ନ କରନ୍ତି ସେମାନେହେଁ ସେ କାଳରେ ଯୋଗ୍ୟ ଆହାର ପାନ୍ତି ଯେହେତୁ ପରମେଶ୍ୱର କ୍ଷୁଦ୍ର ଘରଚଟିଆ ଚଢାଇକୁ ନ ପାସୋରନ୍ତି। ଏନିମନ୍ତେ ଯେ ପକ୍ଷିଗଣ ନିଜ ଦେଶରେ ଯୋଗ୍ୟ ଆହାର ନ ପାନ୍ତି ସେମାନେ ଦେଶାନ୍ତରରେ ଯାଇ ପ୍ରାଣଧାରଣ କରନ୍ତି। ଏହି ପକ୍ଷିମାନଙ୍କର ନାମ ଭ୍ରମଣକାରୀ

ପକ୍ଷୀ । ବକ, ସାରସ, ଢାଳଚଞ୍ଚୁ, କୁମ୍ଭୀ, ଖଞ୍ଜନ, ଇତ୍ୟାଦି ପକ୍ଷିକି ଏଉପେ ଜାଣିବ । ଯେଣୁ ଏହି ସମସ୍ତ ପକ୍ଷିହିଁ ସମୟବିଶେଷରେ ସ୍ୱଦେଶ ତ୍ୟାଗ କରି ଯୋଗ୍ୟ ସମୟରେ ଅନ୍ୟ ୨ ଦେଶରେ ଗମନ କରନ୍ତି । ପୁଣି ସମୟ ଗଲା ଉତ୍ତାରେ ପୁନର୍ବାର ନିଜ ଦେଶରେ ଆସି ଉପସ୍ଥିତ ହୁଅନ୍ତି ।

ଶିଷ୍ୟ । ଏ ବଡ ଆଶ୍ଚର୍ଯ୍ୟ କଥା । ଏହି ମହା ସମୁଦ୍ର ପାରି ହୋଇ ସେମାନେ କି ପ୍ରକାରେ ଦେଶାନ୍ତରରେ ଗମନ କରନ୍ତି ?

ଗୁରୁ । ସେମାନେ ଗମନ କାଳରେ ସ୍ୱାଭାବିକ ବୋଧରେଇ ଯୋଗ୍ୟପଥ ଚିହ୍ନିବାକୁ ପାରନ୍ତି । ଦେଖ, ଆକାଶମଣ୍ଡଳସ୍ଥ ବକପନ୍ତି ଆପଣାମାନଙ୍କର ଗମନ ନିଶ୍ଚୟ ବୁଝିବାକୁ ପାରନ୍ତି ପୁଣି କୁମ୍ଭୀ, ସାରସ, ଢାଳଚଞ୍ଚୁ, ଏମାନେ ଆପଣାମାନଙ୍କର ଗମନ ସମୟ ପାଁଇ ରହନ୍ତି ।

---

## ମତ୍ସ୍ୟ ବିଷୟରେ ।

ଶିଷ୍ୟ । ହେ ଅବଧାନ, ଏହିକ୍ଷଣେ ଆମ୍ଭେମାନେ କେଉଁ ବିଷୟ ବିବେଚନା କରିବା ?

ଗୁରୁ । ତୁମ୍ଭର ଯେବେ ଇଚ୍ଛା ହୁଏଇ ତେବେ ଅସ ଜଳଜନ୍ତୁର ବିଷୟ କିଛି ବିବେଚନା କରି । ସେମାନେ ଆମ୍ଭମାନଙ୍କର ମତେ ଭୂମିରେ ବାସ କରିବାକୁ ନ ପାରନ୍ତି । ଯେଉଁ ଜଳରେ ଆମ୍ଭେମାନେ ମଗ୍ନ ହେଲେ ଅକସ୍ମାତ୍ ବାୟୁ ରୋଧ ହୋଇ ପ୍ରାଣ ତ୍ୟାଗ କରି ଏମନ୍ତ ଜଳର ମଧ୍ୟରେ ସର୍ବଦା ବାସ କରନ୍ତି । ଏନିମନ୍ତେ ଏରୂପ ମତ୍ସ୍ୟର ବିଷୟରେ ତୁମ୍ଭେ କି ବିବେଚନା କରିଅଛ ? ଏହା କି ଅତି ଆଶ୍ଚର୍ଯ୍ୟ ନୋହେ ? ଦେଖ, କୋଟି ୨ ମତ୍ସ୍ୟ ଜଳ ମଧ୍ୟରେ ବାସ କରୁଅଛନ୍ତି ।

ଶିଷ୍ୟ । କେଉଁ ଲକ୍ଷଣରେ ମତ୍ସ୍ୟ ଚିହ୍ନିବାକୁ ପାରି ?

ଗୁରୁ । ସେମାନଙ୍କର ଶରୀରସ୍ଥ ପକ୍ଷିରେ ଜଣାଯାଏ । ସେ ପକ୍ଷି ଅଙ୍ଗ ବିଶେଷରେ ଥିଲେ ବିଶେଷ ନାମ ପାଏ, ଯେମନ୍ତ ବକ୍ଷସ୍ଥଳସ୍ଥ ପକ୍ଷି, ଉଦରସ୍ଥିତ ପକ୍ଷି, ଗୁହ୍ୟଦେଶସ୍ଥ ପକ୍ଷି, ଲେଞ୍ଜସ୍ଥ ପକ୍ଷି, ଇତ୍ୟାଦି ।

ଶିଷ୍ୟ । ପଶୁମାନଙ୍କର ଯେମନ୍ତ ଚରଣ ତେମନ୍ତ କି ମତ୍ସ୍ୟମାନଙ୍କର ପକ୍ଷି?

ଗୁରୁ । ହଁା, ପଶୁମାନଙ୍କର ଯେମନ୍ତ ଚରଣ ମତ୍ସ୍ୟର ଗୁହ୍ୟସ୍ଥ ପକ୍ଷି ସେରୂପ ଜାଣିବ । ଏହି ପକ୍ଷିର ସ୍ଥାନ ଓ ବିଦ୍ୟମାନତାରେ ମତ୍ସ୍ୟ ଜାତିର ବର୍ଗ ବିଭିନ୍ନ ହୁଅଇ ।

ଶିଷ୍ୟ । ମତ୍ସ୍ୟ ଜାତିର କେତେ ବର୍ଗ ଅଛି?

ଗୁରୁ । ସେମାନଙ୍କର ଛଅ ବର୍ଗ । ପ୍ରଥମ ବର୍ଗସ୍ଥ ମତ୍ସ୍ୟର ବକ୍ଷସ୍ଥଳରେ ପକ୍ଷି ନାହିଁ । ଯଥା, କୋଚିଆ, ତୋଡ଼ ଆଦି ସବୁ ।

ଦ୍ୱିତୀୟ ବର୍ଗର ମଧ୍ୟରେ ଶାଧ ମତ୍ସ୍ୟ ଇତ୍ୟାଦି । ସେମାନଙ୍କର ଉଦରସ୍ଥ ପକ୍ଷି ବକ୍ଷସ୍ଥଳସ୍ଥ ପକ୍ଷିର ଆଗେ ଥାଏ ।

ତୃତୀୟ ବର୍ଗର ମଧ୍ୟରେ ଯେ ସମସ୍ତ ମତ୍ସ୍ୟ ସେମାନଙ୍କର ଉଦରସ୍ଥିତ ପକ୍ଷି ବକ୍ଷସ୍ଥ ପକ୍ଷିର ତଳେ ଥାଏ । ଯେମନ୍ତ କ୍ଷୁଦ୍ର ଶୃଙ୍ଗ, ପାଯୃଶ୍ୱା ଶୃଙ୍ଗ, ଇତ୍ୟାଦି ।

ଚତୁର୍ଥ ବର୍ଗସ୍ଥିତ ମତ୍ସ୍ୟର ଉଦରସ୍ଥ ପକ୍ଷି ବକ୍ଷସ୍ଥ ପକ୍ଷିର ପଛଅଡେ ଥାଏ ଯେମନ୍ତ ମୃଗେଲ, ମାଇମାଛ, ଇତ୍ୟାଦି ।

ଏହି ଚାରି ବର୍ଗ ଭିନ୍ନ ଯେ ଦୁଇ ବର୍ଗ ରହିଲେ ସେମାନଙ୍କର ଶରୀରରେ ଅସ୍ଥିର ବଦଳେ ଉପଅସ୍ଥି ଥାଏ । ଏହି ଦୁଇଙ୍କର ପ୍ରଥମ ବର୍ଗର ମଧ୍ୟରେ ଶ୍ଲେଷକ ମତ୍ସ୍ୟ, ଶେଷ ବର୍ଗର ମଧ୍ୟରେ ହାଙ୍ଗର, ଇତ୍ୟାଦି ଜାଣିବ ।

ଶିଷ୍ୟ । ମତ୍ସ୍ୟ ବର୍ଗର ନମୀଣ ବିଷୟରେ କିଛି ଅସାଧାରଣ କଥା ଅଛି କି ନାହିଁ?

ଗୁରୁ । ହଁା ଅଛି, ଉଡିବାର ନିମନ୍ତେ ପକ୍ଷିଗଣର ଯେମନ୍ତ

ଯୋଗ୍ୟ ନିର୍ମାଣ ହୋଇଅଛି ସେରୂପେ ମତ୍ସ୍ୟରହି ହୋଇଅଛି ଯେହେତୁ ପକ୍ଷିଗଣ ଯେମନ୍ତ ଆକାଶମଣ୍ଡଳରେ ଉଡବେ ମତ୍ସ୍ୟଗଣହି ସେରୂପେ ଜଳର ମଧ୍ୟରେ ଭ୍ରମଣ କରିବେ ଏହିନିମନ୍ତେ ଉର୍ଦ୍ଧ୍ୱରେ ଓ ତଳେ ଗତି କରିବା ପାଇଁ ସେମାନଙ୍କର ବିଶେଷରୂପେ ସୃଷ୍ଟି ହେଲା । ଦେଖ, ଅଗ୍ରଭାଗ ଆରମ୍ଭ କରି ପୁଚ୍ଛଦେଶ ପର୍ଯ୍ୟନ୍ତ କ୍ରମେ ସୂକ୍ଷ୍ମ, ନିର୍ମଳ, ଦୀର୍ଘାକାର ଶରୀର ହେଲେ ଜଳର ମଧ୍ୟରେ ଗମନାଗମନ କରିବାକୁ ଭଲ ହୁଅଇ ଏହିନିମନ୍ତେ ମତ୍ସ୍ୟଗଣର ତାଦୃଶ ଶରୀର ହୋଇଅଛି ।

ଶିଷ୍ୟ । ମତ୍ସ୍ୟଗଣ ଜଳର ମଧ୍ୟରେ ଥାଇ କିପ୍ରକାରେ ନିଶ୍ୱାସ ପ୍ରଶ୍ୱାସ ଛାଡନ୍ତି ?

ଗୁରୁ । ସେମାନେ ମନୁଷ୍ୟର ମତେ ନୋହେ ଜଳର ମଧ୍ୟରେ ଯେ ବାୟୁ ଅଛି ସେହି ବାୟୁ ସେମାନଙ୍କର ମୁଖ ଦେଇ ପ୍ରବେଶ ହୋଇ ଗାଲସି ଦେଇ ବାହାର ହୁଅଇ ଏହି ସକାଶେ ସେମାନେ ବଞ୍ଚନ୍ତି ।

ଶିଷ୍ୟ । ମତ୍ସ୍ୟର କି ଇନ୍ଦ୍ରିୟ ଅଛି ?

ଗୁରୁ । ହାଁ, ସେମାନଙ୍କର ନାସିକା ଦେଖି ବୋଧ ହୁଅଇ ଯେ ଘ୍ରାଣେନ୍ଦ୍ରିୟ ଅଛି ପୁଣି ମନୁଷ୍ୟରଠାରୁ ସେମାନଙ୍କର ସ୍ପର୍ଶେନ୍ଦ୍ରିୟ କିଞ୍ଚିତ୍ ପ୍ରବଳ ଯେହେତୁ ବାୟୁଗତ ଶୀତଳତା ଓ ଉଷ୍ଣତା ଗୁଣ ସେମାନଙ୍କର ଶୀଘ୍ର ବୋଧ ହୁଅଇ । ଆଉ ଜଳର ମଧ୍ୟରେ ଯେମନ୍ତ ସେମାନଙ୍କର ଦୃଷ୍ଟିର ବ୍ୟାଘାତ ନ ଜନ୍ମଇ ଏକାରଣ ବିଶେଷ କରି ସେମାନଙ୍କର ଚକ୍ଷୁର ନିର୍ମାଣ ଆଶ୍ଚର୍ଯ୍ୟରୂପରେ ହୋଇଅଛି ।

ଶିଷ୍ୟ । ମତ୍ସ୍ୟଗଣର କାତିରେ କି ଉପକାର ?

ଗୁରୁ । ଜଳର ଭାର ଯେମନ୍ତ ସେମାନଙ୍କୁ ନ ଲାଗଇ ପୁଣି ଶୀତରେ ଯେମନ୍ତ ସେମାନେ କାତର ନୁହନ୍ତି ଏହିନିମନ୍ତେ ସେମାନଙ୍କର କାତି ନିର୍ମିତ ହୋଇଅଛି ।

ଶିଷ୍ୟ । କାହିଁରେ ସେମାନେ ଜଳ ମଧ୍ୟରେ ବେଗରେ ଗମନ କରନ୍ତି ?

ଗୁରୁ । ଲେଞ୍ଜରେ, ସେମାନେ ଲେଞ୍ଜର ଚାଳନରେ ଆପଣାକୁ ଅଗ୍ରଭାଗରେ ଚଳନ୍ତି ।

ଶିଷ୍ୟ । ତେବେ କି ସେମାନଙ୍କର ପକ୍ଷିରେ ପ୍ରୟୋଜନ ?

ଗୁରୁ । ହଁା ପ୍ରୟୋଜନ ଅଛି, ଯେଣୁ ସେମାନେ ପକ୍ଷିରେ ସମାନ ହୋଇ ଅଧୋମୁଖରେ ଚଳିବାକୁ ପୁଣି ଏଣେତେଣେ ଫେରିବାକୁ ପାରନ୍ତି, ଜଳ ମଧ୍ୟରେ ସ୍ଥିର ହୋଇ ରହିବାକୁ ପାରନ୍ତି ।

ଶିଷ୍ୟ । କାହିଁରେ ସେମାନେ ଜଳ ମଧ୍ୟରେ ଉପରକୁ ତଳକୁ ଗମନାଗମନ କରନ୍ତି ?

ଗୁରୁ । ସେମାନଙ୍କର ଉଦର ମଧ୍ୟରେ ଯେ ଫୁଟି ଅଛି ତାହାକୁ ଇଚ୍ଛାନୁସାରେ ବିସ୍ତାରିତ ଓ ସାଙ୍କୁଡ଼ି ଯାଇ ଉପରକୁ ତଳକୁ ଗତାୟାତ କରନ୍ତି ।

ଶିଷ୍ୟ । ସେହି ଫୁଟିରେ ସେମାନେ କିପ୍ରକାରେ ଉପରକୁ ତଳକୁ ଗତିବିଗତି କରିବାକୁ ପାରନ୍ତି ?

ଗୁରୁ । ଯେ ସମୟରେ ସେମାନେ ଉଦର ଫୁଟି ବିସ୍ତାର କରନ୍ତି ସେକାଳରେ ଜଳଠାରୁ ଲଘୁ ହୋଇ ଉପରକୁ ଗମନ କରନ୍ତି ପୁଣି ଯେ କାଳରେ ତାହା ସଙ୍କୁଚିତ କରନ୍ତି ସେ କାଳରେ ଭାରି ହୋଇ ତଳକୁ ଯାନ୍ତି ।

ଶିଷ୍ୟ । ମତ୍ସ୍ୟଗଣ କି ଭକ୍ଷଣ କରି ପ୍ରାଣଧାରଣ କରନ୍ତି ?

ଗୁରୁ । କୀଟ, ମକ୍ଷିକା, ଜଳଜାତ ନବୀନ ତୃଣାଦି ଭୋଜନ କରି ପ୍ରାଣଧାରଣ କରନ୍ତି ପୁଣି ବଡ଼ ବଡ଼ ମତ୍ସ୍ୟଗଣ କ୍ଷୁଦ୍ର ମତ୍ସ୍ୟ ଧରି ଭୋଜନ କରନ୍ତି ଏହିନିମନ୍ତେ କ୍ଷୁଦ୍ର ମତ୍ସ୍ୟ ଅସଂଖ୍ୟ ଜନ୍ମନ୍ତି ।

ଶିଷ୍ୟ । କୌଣସି କୌଣସି ମତ୍ସ୍ୟର କି ଡିମ୍ବ ଅଧିକ ନୁହଇ ?

ଗୁରୁ । ହଁା ଦେଖ, ଏକାବେଳେ ମତ୍ସ୍ୟର ଉଦରରେ ଅତାଇ

ହଜାର ଜୀବ ଜନ୍ତୁ ଏତେ ଡିମ୍ବ ଉତ୍ପନ୍ନ ହୁଅଇ । ଏକ ସଙ୍କର ମତ୍ସ୍ୟର ଉଦରରେ ଦେଡ଼ କୋଟି ଜୀବଜନକ ଡିମ୍ବ ଉତ୍ପନ୍ନ ହୁଅନ୍ତି ।। ଏକ ଗାଧ ମତ୍ସ୍ୟର ଉଦରରେ ନବ କୋଟି ଜୀବଜନକ ଡିମ୍ବ ଜନ୍ମନ୍ତି । ପୁଣି ଇଲିଶ ମତ୍ସ୍ୟର ଉଦରରେ ଏରୂପ ଡିମ୍ବ ଅନୁମାନ ହୁଅଇ ।

ଶିଷ୍ୟ । ପକ୍ଷିଗଣ ଯେମନ୍ତ ସମୟବିଶେଷରେ ଦେଶାନ୍ତରରେ ଗମନ କରନ୍ତି ମତ୍ସ୍ୟଗଣ କି ସେରୂପ ନୋହେ?

ଗୁରୁ । ହଁ, ଯାଦା, ଭେକଟି, ଇଲିଶି, ତପସୀ, ଇତ୍ୟାଦି ମତ୍ସ୍ୟଗଣ ସେରୂପ ଭ୍ରମଣ କରନ୍ତି ପ୍ରମାଣ । ମାତ୍ର କେତେ ଅବା ସମୁଦ୍ରରୁ ନଦୀରେ ଆଗମନ କରନ୍ତି ପୁଣି କେତେ ବା ସମୟବିଶେଷରେ ସମୁଦ୍ର ମଧ୍ୟରେ ଏକତ୍ର ହୁଅନ୍ତି ଏହିରୂପ ଆପଣାମାନଙ୍କର ସ୍ୱଭାବ ବଶରେ ଭ୍ରମଣ କରନ୍ତି ।

ଶିଷ୍ୟ । ମନୁଷ୍ୟର ନିମନ୍ତେ ପରମେଶ୍ୱର କେମନ୍ତ ଅସଂଖ୍ୟ ଖାଦ୍ୟ ବସ୍ତୁ ପ୍ରସ୍ତୁତ କରିଅଛନ୍ତି!

ଗୁରୁ । ପରମେଶ୍ୱର ଆମ୍ଭମାନଙ୍କର ପ୍ରତି କେମନ୍ତ ଦୟା ଅନୁଗ୍ରହ ପ୍ରକାଶ କରିଅଛନ୍ତି ତାହାକୁ ତୁମ୍ଭେ ସାକ୍ଷାତ ଦେଖିବାକୁ ପାଉଅଛ । ସେ ଆମ୍ଭମାନଙ୍କୁ ସମସ୍ତ ପ୍ରଦାନ କରିଅଛନ୍ତି । ଦେଖ, ଯେତେ ଗୋରୁ ମେଣ୍ଢା ଅଛନ୍ତି ପୁଣି ବିଲରେ ଯେତେ ପଶୁ ଅଛନ୍ତି ପୁଣି ଆକାଶରେ ଯେତେ ପକ୍ଷୀ ଅଛନ୍ତି ପୁଣି ସମୁଦ୍ରରେ ଯେତେ ମତ୍ସ୍ୟ ଅଛନ୍ତି ତାହା ସମସ୍ତ ସେ ଆମ୍ଭମାନଙ୍କୁ ଦେଇଅଛନ୍ତି ।

---

## ପତଙ୍ଗ ବିଷୟ ।

ଗୁରୁ । ଏହିକ୍ଷଣେ ଆମ୍ଭେମାନେ କ୍ଷୁଦ୍ର ଜନ୍ତୁର ବିଷୟ କିଛି ବିବେଚନା କରୁ । ଭଲ, ତୁମ୍ଭେ ପତଙ୍ଗର ବିଷୟ କିଛି ବିବେଚନା କରିଅଛ?

ଶିଷ୍ୟ । ସେମାନଙ୍କର ବିଷୟରେ ଅଳ୍ପ ବିବେଚନା କରୁଅଛୁଁ ପୁଣି ସୁନ୍ଦରରୂପେ ଜାଣିବାକୁ ପାଉ ନାହୁଁ ।

ଗୁରୁ । ପରମେଶ୍ୱରର ସୃଜନ୍ତ ଜନ୍ତୁ ଯେବେ କ୍ଷୁଦ୍ର ହୁଅଇ ତେ-ବେହେଁ ତାହାକୁ ତୁଚ୍ଛବୋଧ କରିବାର ଅନୁଚିତ ।

ଶିଷ୍ୟ । ତେବେ ପତଙ୍ଗ କେତେ ବର୍ଗରେ ବିଭକ୍ତ ହୁଅନ୍ତି ତାହା ଅନୁଗ୍ରହ କରି ଆମ୍ଭକୁ ବୋଲନ୍ତୁ ।

ଗୁରୁ । ସେମାନଙ୍କର ସପ୍ତ ବର୍ଗ ।

ଶିଷ୍ୟ । ତାହା କି ପ୍ରକାରେ ବିଭକ୍ତ ହୁଅଇ?

ଗୁରୁ । ପକ୍ଷସଂଖ୍ୟା ପୁଣି ଗୁଣ ଏହି ଦୁଇରେ ପୁଣି ପକ୍ଷିର ଅଭାବରେ ଭେଦ କରା ଯାଏ ।

ଶିଷ୍ୟ । ଏହି ସମସ୍ତ ବର୍ଗର ବିବରଣ ଆପଣ କି କହିବେ?

ଗୁରୁ । ହଁା, ତେବେ ଶୁଣ । ପ୍ରଥମ ବର୍ଗର ମଧ୍ୟରେ ଯେ ସମସ୍ତ ପତଙ୍ଗ ସେମାନଙ୍କର ଚାରି ପକ୍ଷି ତାହାର ଉପର ପକ୍ଷି ଶୃଙ୍ଗ ସଦୃଶ କଠିଣ ସେ କେବଳ ଆବରଣାର୍ଥ ମାତ୍ର ପୁଣି ଝିଲ୍ଲିଲ ବସ୍ତୁଠାରୁହିଁ ଯୋର୍ ତଳର ଯେ ପକ୍ଷି । ଦୁଇ ସେହି ପ୍ରକୃତ ପକ୍ଷି । ଯଥା ଗୋବ-ରପୋ ପୋକ ଇତ୍ୟାଦିର ପକ୍ଷି ।

ଦ୍ୱିତୀୟ ବର୍ଗ ପତଙ୍ଗର ଆବରଣାର୍ଥେ ଦୁଇ ଅର୍ଦ୍ଧ ପକ୍ଷେ ଥାଏ । ଯଥା ଫଡଙ୍ଗ, ଗନ୍ଧପୋକ, ଇତ୍ୟାଦି ।

ତୃତୀୟ ବର୍ଗ ପତଙ୍ଗର ପକ୍ଷି ଲୋମାକାର ଓ ଧୂଳିବର୍ଣ୍ଣ ତାହରେ ବ୍ୟାପ୍ତ ହୁଅଇ । ଯଥା ପ୍ରଜାପତି ଇତ୍ୟାଦିର ।

ଚତୁର୍ଥ ବର୍ଗର ମଧ୍ୟରେ ଝିଁଝିଁ ଇତ୍ୟାଦି । ସେମାନଙ୍କର ପକ୍ଷି ଅତି ସୂକ୍ଷ୍ମ ଚର୍ମୀକୃତ ଶିରାର ପ୍ରାୟେ ନିର୍ମଳ ପୁଣି ସେମାନଙ୍କର ନାହୁଡ ନାହିଁ ।

ପଞ୍ଚମ ବର୍ଗର ମଧ୍ୟରେ ଯେ ସମସ୍ତ ପତଙ୍ଗ ସେମାନଙ୍କର ପକ୍ଷି

ସୂକ୍ଷ୍ମ ଚର୍ମିକାର ପୁଣି ସେମାନେ ଜାହ୍ନୁତପୟନ୍ତ । ଯଥା ବଲୁପ, ଭ୍ରମର, ପିମ୍ପୁଡ଼ ବଶେଷ, ଇତ୍ୟାଦ୍ଦ ।

ଷଷ୍ଠ ବର୍ଗ ପତଙ୍ଗର ଦୁଇ ପକ୍ଷି । ଯଥା ମକ୍ଷିକା, ମଶକ, ଇତ୍ୟାଦ ।

ସପ୍ତମ ବର୍ଗ ପତଙ୍ଗର ପକ୍ଷି ନାହିଁ ଯଥା, ବୁଡ଼ିଆଣୀ, ଘୁଣପୋକ, ଇତ୍ୟାଦ । ପୁଣି ଏହି ସପ୍ତମ ବର୍ଗର ମଧ୍ୟରେ କଙ୍କଡ଼ା, ଚିଙ୍ଗଡ଼ା, ଗଲ୍ଲଚୁଙ୍ଗୁଡ଼, କଙ୍କଡ଼ାବିଛ, ଇତ୍ୟାଦ ଜାଣିବ ।

ଶିଷ୍ୟ । ଏହି ପତଙ୍ଗର ଜୀବଦ୍ଦଶାରେ କି ନାନା ଅବସ୍ଥା ନୁହଇ ?

ଗୁରୁ । ହଁ, ସେମାନେ ଅଣ୍ଡଜ ଡିମ୍ବରୁ ଜନ୍ମିଲେ ଜୀବଦ୍ଦଶାରେଇ ଗୃହ ଅବସ୍ଥା ପ୍ରାପ୍ତ ହୁଅନ୍ତ । ପ୍ରଥମରେ ଡିମ୍ବ ହୁଅଇ, ପଶ୍ଚେ ଶୁଅପୋକ ହୁଅଇ, ତହିଁ ଉତ୍ତାରେ ଗୁଡ଼ି ବାନ୍ଧି ନିଷ୍ପନ୍ଦ ଥାଇ, ସମସ୍ତ ସମ୍ପୂର୍ଣ୍ଣ ହେଲା ଉତ୍ତାରେ ପତଙ୍ଗ ହୁଅନ୍ତ ।

ଶିଷ୍ୟ । ପତଙ୍ଗଗଣ କେଉଂ ୨ ସ୍ଥାନରେ ଥାନ୍ତ ?

ଗୁରୁ । ସେମାନେ ସମସ୍ତ ସ୍ଥାନରେଇ ଥାନ୍ତ । ଦେଖ, ଆକାଶ, ପୃଥିବୀ, ଜଳ, କାଷ୍ଠ, ପଥର, ଶଙ୍ଖ, କାଦୁଅ, ବାଲି, ଇତ୍ୟାଦ ସବୁଠାରେ ଥାନ୍ତ ।

ଶିଷ୍ୟ । ସେମାନେ କି ଭକ୍ଷଣ କରନ୍ତ ?

ଗୁରୁ । ପ୍ରାୟ ସମସ୍ତଇ ଭକ୍ଷଣ କରନ୍ତ । ଦେଖ, ମାଂସ, ମତ୍ସ୍ୟ, ପୁଷ୍ପ, ଶାଗ, କାଦୁଅ, ଗୋଲିଆପାଣି, ଇତ୍ୟାଦ ସମସ୍ତ ସେମାନେ ଭୋଜନ କରନ୍ତ ।

ଶିଷ୍ୟ । ସେମାନଙ୍କର ଶରୀରର ମଧ୍ୟରେ କେଉଂ ୨ ଅଙ୍ଗର ଆଶ୍ଚର୍ଯ୍ୟ ବର୍ଣ୍ଣନ ହୁଅଇ ?

ଗୁରୁ । ସେମାନେ ଯହିଁରେ ଦଂଶନ ଓ ଆପଣାକୁ ରକ୍ଷା କରିବାକୁ ପାରନ୍ତ ଏମନ୍ତ ଯେ ଚକ୍ଷୁ, ପକ୍ଷି, ବର୍ଣ୍ଣ, ଏ ସମସ୍ତ ଅଙ୍ଗଇ ସେମାନଙ୍କର ଆଶ୍ଚର୍ଯ୍ୟ । ତୁମ୍ଭେ ଯେବେ କ୍ଷୁଦ୍ର ଦୂରବୀଣରେ ଦୃଷ୍ଟି କର ତେବେ ପ୍ରଜାପତର ପକ୍ଷିର ଉପରେ ଯାହା ଆମ୍ଭେମାନେ

ଧୂଳୀବତ୍ ବୋଧ କର ସେ ସମସ୍ତ ଯେ କେମନ୍ତ ସୁନ୍ଦର ବଚିତ୍ର ବେମ ତାହା ଦେଖିବାକୁ ପାଇବ । ପୁଣି ସେମାନଙ୍କର ଚରଣର ବବେଚନାର ଯୋଗ୍ୟ ପ୍ରମାଣ ଯେଣୁ ମାଛିମାନେ କଳାଙ୍କବାଠି ଉପରେ ଛିଡା ହୋଇ ଉଠିବାକୁ ପାରନ୍ତି ପୁଣି ଛତର ଉପରକୁ ଊର୍ଦ୍ଧ୍ୱ ମୁଖରେ ଗମନ କରବାକୁ ପାରନ୍ତି ।

ଶିଷ୍ୟ । କିପ୍ରକାରେ ସେମାନଙ୍କର ଏମନ୍ତ ଗମନ ହୁଅଇ ?

ଗୁରୁ । ସେମାନଙ୍କର ଚରଣରେ ଅଠାର ପ୍ରାପ୍ୟେ ବସ୍ତୁ ଅଛି ଏହିନିମନ୍ତେ ଧାରଣ କରବାକୁ ପାରନ୍ତି । ତାହା ଛଡା ଅମ୍ଭମାନଙ୍କର ଗୋଚରରେ ଯେ କୌଣସି ବସ୍ତୁ ସମାନ ଚିକ୍କଣିଆ ହୁଅଇ ତାହା ସେମାନଙ୍କର ଗୋଚରେ ଏମନ୍ତ କଠୋର ବୋଧ ହୁଅଇ ଯେ ସେମାନେ ଅନାୟାସରେ ସେହି କ୍ଷୁଦ୍ର କୋମଳ ଚରଣରେ ତାହା ଠାଣି କର ଧରବାକୁ ପାରନ୍ତି ।

ଶିଷ୍ୟ । ସେମାନଙ୍କର ଜନ୍ମ କି ପ୍ରକାରେ ହୁଅଇ ?

ଗୁରୁ । ସେମାନେ ଡିମ୍ବରୁ ଉତ୍ପନ୍ନ ହୁଅଇ । ସେମାନଙ୍କର ଅସଂଖ୍ୟ ଡିମ୍ବ ହେଲେ ଫୁଟାଇବାର ପୂର୍ବରେ ନିର୍ଜନ ସ୍ଥାନରେ ତାହା ରକ୍ଷା କରନ୍ତି ।

ଶିଷ୍ୟ । ଅନେକ୨ ପତଙ୍ଗ କି ହିଂସ୍ରକ ନୋହେ ?

ଗୁରୁ । ହଁ, ତହିଁରେ ସନ୍ଦେହ କି ? ପଙ୍ଗପାଳ, ଶୁଅପୋକ, ଇତ୍ୟାଦି ଏମାନେ ହିଂସ୍ରକ ପୁଣି ଏମାନଙ୍କରଠାରେ ଯେମନ୍ତ ଅଧିକ ଅନିଷ୍ଟ, ନୁହଇ ଏହିନିମନ୍ତେ ପକ୍ଷିଗଣ ସେମାନଙ୍କର ଅନେକଙ୍କୁ ଭୋଜନ କରନ୍ତି । ମାତ୍ର ଯେ ଗୁଟିପୋକକୁ ଅମ୍ଭେମାନେ ହିଂସ୍ର କର ବୋଲି ସେମାନଙ୍କରହିଁଠାରୁ ଅମ୍ଭମାନଙ୍କର ଅନେକ ଉପକାର ହୁଅଇ କେବଳ ସେମାନଙ୍କରଠାରୁହିଁ ହୁଅଇ ଏମନ୍ତ ନୋହେ ଅଉ୨ ଅନେକ୨ ପୋକରୁହିଁ ଉପକାର ହୁଅଇ ଏହା ଅମ୍ଭମାନଙ୍କର ମନରେ ନିଶ୍ଚୟ ଅଛି ପୁଣି ଅମ୍ଭେମାନେ ତାହା

ସୂକ୍ଷ୍ମ ଚର୍ମୀକାର ପୁଣି ସେମାନେ ନାଦ୍ଧଯୁକ୍ତ । ଯଥା ବଲୁଅ, ଭ୍ରମର, ପିମ୍ପୁଡ଼ ବିଶେଷ, ଇତ୍ୟାଦି ।

ଷଷ୍ଠ ବର୍ଗ ପତଙ୍ଗର ଦୁଇ ପକ୍ଷ । ଯଥା ମକ୍ଷିକା, ମଶକ, ଇତ୍ୟାଦି ।

ସପ୍ତମ ବର୍ଗ ପତଙ୍ଗର ପକ୍ଷ ନାହିଁ ଯଥା, ରୁଡ଼ିଅଣୀ, ଘୁଣପୋକ, ଇତ୍ୟାଦି । ପୁଣି ଏହି ସପ୍ତମ ବର୍ଗର ମଧ୍ୟରେ କଙ୍କଡ଼ା, ଚିଙ୍ଗଡ଼ା, ଗଲ୍ଦାଚୁଙ୍ଗୁଡ଼ି, କଙ୍କଡ଼ାବିଛା, ଇତ୍ୟାଦି ଜାଣିବ ।

ଶିଷ୍ୟ । ଏହି ପତଙ୍ଗର ଜୀବଦ୍ଦଶାରେ କି ନାନା ଅବସ୍ଥା ନୁହଇ ?

ଗୁରୁ । ହଁ, ସେମାନେ ଅଣ୍ଡାରୁ ଉତ୍ପନ୍ନ ହେଲେ ଜୀବଦ୍ଦଶାରେଇ ଚାରି ଅବସ୍ଥା ପ୍ରାପ୍ତ ହୁଅନ୍ତି । ପ୍ରଥମରେ ଡିମ୍ବ ହୁଅଇ, ପଛେ ଶୁଅପୋକ ହୁଅଇ, ତହିଁ ଉତ୍ତାରେ ଗୁଡ଼ି ବାନ୍ଧି ନିସ୍ପନ୍ଦ ଥାଇ, ସମସ୍ତ ସମ୍ପୂର୍ଣ୍ଣ ହେଲା ଉତ୍ତାରେ ପତଙ୍ଗ ହୁଅନ୍ତି ।

ଶିଷ୍ୟ । ପତଙ୍ଗଗଣ କେଉଁ୨ ସ୍ଥାନରେ ଥାନ୍ତି ?

ଗୁରୁ । ସେମାନେ ସମସ୍ତ ସ୍ଥାନରେଇ ଥାନ୍ତି । ଦେଖ, ଆକାଶ, ପୃଥିବୀ, ଜଳ, କାଷ୍ଠ, ପଥର, ଶଙ୍ଖ, କାଦୁଅ, ବାଲି, ଇତ୍ୟାଦି ସବୁଠାରେ ଥାନ୍ତି ।

ଶିଷ୍ୟ । ସେମାନେ କି ଭକ୍ଷଣ କରନ୍ତି ?

ଗୁରୁ । ପ୍ରାୟ ସମସ୍ତଇ ଭକ୍ଷଣ କରନ୍ତି । ଦେଖ, ମାଂସ, ମତ୍ସ୍ୟ, ପୁଷ୍ପ, ଶାଗ, କାଦୁଅ, ଗୋଲିଆପାଣି, ଇତ୍ୟାଦି ସମସ୍ତ ସେମାନେ ଭୋଜନ କରନ୍ତି ।

ଶିଷ୍ୟ । ସେମାନଙ୍କର ଶରୀରର ମଧ୍ୟରେ କେଉଁ୨ ଅଙ୍ଗର ଆଶ୍ଚର୍ଯ୍ୟ ଦର୍ଶନ ହୁଅଇ ?

ଗୁରୁ । ସେମାନେ ଯହିଁରେ ଦଂଶନ ଓ ଆପଣାକୁ ରକ୍ଷା କରିବାକୁ ପାରନ୍ତି ଏମନ୍ତ ଯେ ଚକ୍ଷୁ, ପକ୍ଷ, ବର୍ଣ୍ଣ, ଏ ସମସ୍ତ ଅଙ୍ଗଇ ସେମାନଙ୍କର ଆଶ୍ଚର୍ଯ୍ୟ । ତୁମ୍ଭେ ଯେବେ କ୍ଷୁଦ୍ର ଦୂରବୀଣରେ ଦୃଷ୍ଟି କର ତେବେ ପ୍ରଜାପତିର ପକ୍ଷର ଉପରେ ଯାହା ଆମ୍ଭେମାନେ

ଧୂଳୀବର୍ ବୋଧ କର ଯେ ସମସ୍ତ ଯେ କେମନ୍ତ ସୁନ୍ଦର ବଚିବ
ଶେମ ତାହା ଦେଖିବାକୁ ପାଇବ । ପୁଣି ସେମାନଙ୍କର ଚରଣଇ
ବବେଚନାର ଯୋଗ୍ୟ ପ୍ରମାଣ ଯେଣୁ ମାଛମାନେ ଜଳାଙ୍କବାଠି
ଉପରେ ଛଡା ହୋଇ ଉଠିବାକୁ ପାରନ୍ତ ପୁଣି ଛଢର ଉପରକୁ
ଉର୍ଦ୍ଧ ମୁଖରେ ଗମନ କରବାକୁ ପାରନ୍ତ ।

ଶିଷ୍ୟ । କପ୍ରକାରେ ସେମାନଙ୍କର ଏମନ୍ତ ଗମନ ହୁଅଇ ?

ଗୁରୁ । ସେମାନଙ୍କର ଚରଣରେ ଅଠାର ପ୍ରାପ୍ତେ ବସ୍ତୁ ଅଛ
ଏହନମନ୍ତେ ଧାରଣ କରବାକୁ ପାରନ୍ତ । ତାହା ଛଡା ଅମ୍ଭମାନ-
ଙ୍କର ଗୋଚରରେ ଯେ କୌଣସି ବସ୍ତୁ ସମାନ ଚିକଣିପ୍ରା ହୁଅଇ
ତାହା ସେମାନଙ୍କର ଗୋଚରେ ଏମନ୍ତ କଠୋର ବୋଧ ହୁଅଇ
ଯେ ସେମାନେ ଅନାୟାସରେ ସେହ କ୍ଷୁଦ୍ର କୋମଳ ଚରଣରେ
ତାହା ଝାଣି କର ଧରବାକୁ ପାରନ୍ତ ।

ଶିଷ୍ୟ । ସେମାନଙ୍କର ଜନ୍ମ କ ପ୍ରକାରେ ହୁଅଇ ?

ଗୁରୁ । ସେମାନେ ଡମ୍ବରୁ ଉତ୍ପନ୍ନ ହୁଅଇ । ସେମାନଙ୍କର
ଅସଂଖ୍ୟ ଡମ୍ବ ହେଲେ ଫୁଟାଇବାର ପୂର୍ବରେ ନିର୍ଜନ ସ୍ଥାନରେ
ତାହା ରକ୍ଷା କରନ୍ତ ।

ଶିଷ୍ୟ । ଅନେକ୨ ପତଙ୍ଗ କ ହିଂସ୍ରକ ନୋହେ ?

ଗୁରୁ । ହଁ, ତହିଁରେ ସନ୍ଦେହ କ ? ପଙ୍ଗପାଳ, ଶୁଅପୋକ,
ଇତ୍ୟାଦ ଏମାନେ ହିଂସ୍ରକ ପୁଣି ଏମାନଙ୍କରଠାରେ ଯେମନ୍ତ ଅଧିକ
ଅନଷ୍ଟ ନୁହଇ ଏହନମନ୍ତେ ପକ୍ଷିଗଣ ସେମାନଙ୍କର ଅନେକକୁ
ଭୋଜନ କରନ୍ତ । ମାତ୍ର ଯେ ଗୁଡ଼ିପୋକକୁ ଅମ୍ଭେମାନେ ହିଂସ୍ର
କର ବୋଲ୍ ସେମାନଙ୍କରହିଁଠାରୁ ଅମ୍ଭମାନଙ୍କର ଅନେକ ଉପ-
କାର ହୁଅଇ କେବଳ ସେମାନଙ୍କରଠାରୁହିଁ ହୁଅଇ ଏମନ୍ତ
ନୋହେ ଅଉ୨ ଅନେକ୨ ପୋକରୁହିଁ ଉପକାର ହୁଅଇ ଏହା
ଅମ୍ଭମାନଙ୍କର ମନରେ ନିଶ୍ଚୟ ଅଛ ପୁଣି ଅମ୍ଭେମାନେ ତାହା

ଜାତସାର ନୋହି । ଅତ୍ର ପ୍ରାୟ ସମସ୍ତ ପତଙ୍ଗହିଁ ବଡ଼ କର୍ମଶୀଳ ହୁଅନ୍ତି । ଦେଖ, ମନୁଷ୍ୟମାତ୍ରର ଯତ୍ନରୁ ଅମ୍ଭେମାନେ ମଧୁ ଓ ମହମ ପାଇ ସେମାନଙ୍କର ମହମ ନିର୍ମିତ ଉତ୍ତମ ଗୃହର ମଧ୍ୟରେ ମଧୁ ଥାଏ ।

ଶିଷ୍ୟ । ଭଲ ଅବଧାନ, ମନୁଷ୍ୟମାନଙ୍କର ଯେ କର୍ମ ଅସାଧ୍ୟ ତାହା କି ମଧୁ ମକ୍ଷିକାମାନେ କରିବାକୁ ପାରନ୍ତି? ସେମାନେ କି ପ୍ରକାରେ ମଧୁ ଉତ୍ପନ୍ନ କରନ୍ତି?

ଗୁରୁ । ସେମାନେ ନାନା ସ୍ଥାନରେ ଏଣେତେଣେ ଭ୍ରମଣ କରି କ୍ଷେତ୍ର, ବନ, ଉପବନରୁ ଶୁଣ୍ଡରେ କ୍ରମେ୨ ପୁଷ୍ପରସ ଆଣି ଗୃହର ମଧ୍ୟରେ ସଂଗ୍ରହ କରନ୍ତି ।

ଶିଷ୍ୟ । ସେମାନେ କି ଆପଣାମାନଙ୍କର ଗୃହ ଚିହ୍ନିବାକୁ ପାରନ୍ତି ପୁଣି ସର୍ବଦାଇ କି ସେ ଗୃହର ମଧ୍ୟରେ ଥାନ୍ତି?

ଗୁରୁ । ମଧୁମକ୍ଷିକା ସମସ୍ତ ଶାସିତ ପ୍ରକାର ପ୍ରାଏ ଜନ୍ତୁ ସେମାନଙ୍କର ମଧ୍ୟସ୍ଥିତ ଯେ ଏକ ରାଣୀ ଅଛି ସମସ୍ତେଇ ତାହାର ଅଧୀନ ହୋଇ ଥାନ୍ତି । ତହିଁରେ ଯେମନ୍ତ ନିୟମରେ ଆଦେଶ ପାଇ ତାହା ଗ୍ରହଣ ଓ ପାଳଣ କରନ୍ତି । ପୁଣି ନିଜ ବର୍ଗର ହିତର ନିମନ୍ତେ ଯତ୍ନ କରି ଏକକୁଆରେକ ଉପକାର ଚେଷ୍ଟା କରନ୍ତି । ଏମନ୍ତେ ସେମାନଙ୍କରଠାରୁ ଅମ୍ଭେମାନେ ଅନେକ ଉପଦେଶ ପାଇବାକୁ ପାରି । ଦେଖ, ସେମାନେ ଯେବେ ଝାଙ୍କ କରି ମଧୁ ଗୃହର ଆଡେ ଦୌଡନ୍ତି ତେବେ ଶୀଘ୍ର ଯେ ବୃଷ୍ଟି ହେବ ଏହା ଜଣା ଯାଏ ।

ଶିଷ୍ୟ । ଏମନ୍ତ ମଧୁମକ୍ଷିକାମାନଙ୍କୁ ଯେ ନଷ୍ଟ କରିବାର ଏହା କି ନିର୍ଦୟର କର୍ମ ନୋହେ? ପୁଣି ସେମାନଙ୍କର ଏପ୍ରକାର ସଞ୍ଚିତ ଧନ ଯେ ହରଣ କରିବାର ଏହା କି ଅକାର୍ଯ୍ୟ କର୍ମ ନୋହେ?

ଗୁରୁ । ନା, ସେମାନଙ୍କର ପରିଶ୍ରମଲବ୍ଧ, ମଧୁ ହରଣ କଲେ

ଅମ୍ଭମାନଙ୍କର ପାପ ନାହିଁ ଯେଣୁ ସମସ୍ତ ମଧୁ ସେମାନଙ୍କର ପ୍ରୟୋଜନର ଯୋଗ୍ୟ ନୋହେ । ଅତଏବ ପରମେଶ୍ୱର ଅମ୍ଭମାନଙ୍କର ହିତର ନିମନ୍ତେ ଯେ ମଧୁମକ୍ଷିକା ଦ୍ୱାରା ମଧୁର ସୃଷ୍ଟି କରିଅଛନ୍ତି ଏହା ଅମ୍ଭମାନଙ୍କର ନିଶ୍ଚୟ ଅଛି । ଆଉ ସେମାନଙ୍କୁହିଁ ଅବା କିପାଁ ବଧ ନ କରିବା ? ଅମ୍ଭେମାନେ କି ମତ୍ସ୍ୟମାନଙ୍କୁ ବଧ ନ କରୁ ? ତେବେ ଏକାବେଳେ ଯେ ସମୂହ ମକ୍ଷିକା ନଷ୍ଟ ହୁଅଇ ଏ ଖେଦର ବିଷୟ ପ୍ରମାଣ ପୁଣି ଏକ ବରଷର ମଧ୍ୟରେ ଯେତେ ଜୀବଲି, ମେଣ୍ଢା ଅଦ ନଷ୍ଟ ହେଉଅଛନ୍ତି ତାହା ଯେବେ ଏକ କାଳରେ ଅମ୍ଭମାନଙ୍କର ସାକ୍ଷାତରେ ନଷ୍ଟ ହୁଅନ୍ତେ ତେବେ ତହିଁରେଇ ଅମ୍ଭେମାନେ ଖେଦାନ୍ୱିତ ହୋଇ ଏ ବଡ ନିର୍ଦ୍ଦୟର କର୍ମ ଏମନ୍ତ କଥା ବୋଲନ୍ତୁ ପୁଣି କ୍ରମେ୨ ବିନଷ୍ଟ ହେବାରେ ଅମ୍ଭମାନଙ୍କର ସେତ୍ରପ ଖେଦ ନୁହଇ । ସେ ଯାହା ହେଉ, ଯହିଁରେ ମଧୁମକ୍ଷିକାଗଣଙ୍କୁ ନଷ୍ଟ ନ କରି ମଧୁ ନେବାକୁ ପାରନ୍ତି ଏମନ୍ତ ଉପାୟରେ ଯେବେ ମଧୁ ଗ୍ରହଣ କରନ୍ତି ତେବେ ତାହା ଉତ୍ତମ କର୍ତ୍ତବ୍ୟ ପ୍ରମାଣ ।

ଶିଷ୍ୟ । ମଧୁ ଅପହରଣ ହେଲେ ସେମାନେ ଶୀତକାଳରେ କିଉପରେ ପ୍ରାଣଧାରଣ କରିବାକୁ ପାରନ୍ତି ?

ଗୁରୁ । ସେମାନଙ୍କର ନିମନ୍ତେ କିଞ୍ଚିତ୍ ଅବଶେଷ ମଧୁ ରଖିବାର ଉଚିତ, ତାହା ନ ହେଲେ ସେମାନଙ୍କର ପ୍ରୟୋଜନାନୁସାରେ କ୍ରମେ୨ କିଛି ଦେବାର ଉଚିତ । ଏହିରୂପେ ଯେବେ ମଧୁ ଗ୍ରହଣ ହୁଅଇ ତେବେ ଯହିଁରେ ସେମାନଙ୍କର ପ୍ରୟୋଜନ ନାହିଁ ଏମନ୍ତ ଅବଶେଷ ମଧୁହିଁ ଗ୍ରହଣ ହୁଅଇ ତହିଁରେ କୌଣସି ଦୋଷ ହେବାକୁ ନ ପାରଇ ।

ଶିଷ୍ୟ । ପିପୀଲିକା କି ଅଷ୍ଟପଦି କୀଟ ନୋହେ ?

ଗୁରୁ । ହାଁ, ସେମାନେହେଁ ମଧୁମାଛି ସଦୃଶ ବର୍ଣାଚ୍ଛଦ ପ୍ରକାର ପ୍ରାୟେ କ୍ଷୁଦ୍ର ଜନ୍ତୁ ପ୍ରମାଣ, ତେବେ ମଧୁମାଛି ସଙ୍ଗେ ଏହି ମାତ୍ର

ବିଶେଷ ଯେ ପିପୀଲିକାମାନଙ୍କର ରାଜା ନାହିଁ ସମସ୍ତେହିଁ ଆପଣା ୨ ପ୍ରଧାନ । ଦେଖ, ସେମାନେହିଁ ଗ୍ରୀଷ୍ମକାଳରେ ଖାଦ୍ୟସାମଗ୍ରୀ ସଞ୍ଚୟ କରନ୍ତି ମାତ୍ର ଶୀତକାଳର ନିମନ୍ତେ ଯେ ସେହି ଭକ୍ଷ୍ୟ ଯତ୍ନ କରି ରଖନ୍ତି ତାହା ନୋହେ, ତେବେକିନା ଆପଣାମାନଙ୍କର ଅଣ୍ଡରୁ ଜାତ ନୂତନ ଶିଶୁଗଣର ନିମନ୍ତେ ରଖନ୍ତି ଏଥିରେ ଅନୁମାନ ହୁଅଇ ଶୀତକାଳରେ ସେମାନେ ମଲାର ପ୍ରାୟେ ହୋଇ ରହନ୍ତି । ଯେ ସମୟରେ ସେମାନଙ୍କର ଅଣ୍ଡରୁ ଶିଶୁ ବାହାର ହୁଅଇ ସେକାଳରେ ସେମାନେ ଯତ୍ନ କରି ଶିଶୁମାନଙ୍କର ଶରୀରରୁ ଆଚ୍ଛାଦନ ଚର୍ମ ଦୂର କରି ତହିଁଉତ୍ତାରେ ଶିଶୁମାନଙ୍କୁ ଆହାର ଦେଇ ଭ୍ରମଣ ସ୍ଥାନ ଦେଖାନ୍ତି ।

ଶିଷ୍ୟ । ଏହି ପିମ୍ପୁଡି ସମସ୍ତ କି ସୁଚତୁର ନୁହନ୍ତି?

ଗୁରୁ । ହଁ, ସେମାନଙ୍କର ଆପଣା ୨ ଗୃହ ନିର୍ମାଣ, ଖାଦ୍ୟଦ୍ରବ୍ୟ ସଞ୍ଚାଦି ଗୃହକୁ ଆଣିବାର, ଏକକୁଅନେକ ଅଭିପ୍ରାୟ ବୋଧ, ପୁଣି ନିୟମାନୁସାରେ ଶୀଘ୍ର କର୍ମ କରିବାର ଇତ୍ୟାଦି କ୍ରିୟାରେ ସେମାନଙ୍କର ଉତ୍ତମ ସୁଚତୁରଇ ପ୍ରକାଶ ପାଉଅଛି । ଏହି ପିମ୍ପୁଡିମାନଙ୍କର ବାସସ୍ଥାନ ଏକ ପ୍ରକାର ନଗରର ତୁଲ୍ୟ, ଯେଣୁ ରାତ୍ରିକାଳରେ ତାହାର ଦ୍ୱାର ବନ୍ଦ ଥାଏ ପୁଣି ଦିବସରେ ସେ ଦ୍ୱାରରେ ପ୍ରହରୀ ଥାଏ । ଆଉ ସେ ନଗରର ମଧ୍ୟରେ ଆପଣାମାନଙ୍କ ହିତାର୍ଥେ ଅନେକ ୨ ଗୃହ ନିର୍ମିତ ଅଛି ତହିଁରେ ପ୍ରତ୍ୟେକ ପ୍ରତିବାସି ପିମ୍ପୁଡିମାନେ ଆପଣା ୨ ଗୃହ ଚିହ୍ନିବାକୁ ପାରନ୍ତି ପୁଣି ତହିଁରେ ଥାଇ ଯତ୍ନ କରି ଏକ ଚିତ୍ତରେ ଆପଣା ୨ କର୍ମ କରନ୍ତି । ସେମାନଙ୍କର ନିୟମ, ବ୍ୟବହାର ବିବେଚନା କଲେ ଆମ୍ଭମାନଙ୍କର ଅନେକ ଉପଦେଶ ଲାଭ ହେବାକୁ ପାରଇ, ଅଳସ ଲୋକ ସେମାନଙ୍କର କର୍ମ ନିପୁଣତା ଦେଖିଲେ ତକ୍ଷଣାତ୍ ଶିକ୍ଷା ପାଇବାକୁ ପାରନ୍ତି ଏନିମନ୍ତେ ପ୍ରାଚୀନମାନଙ୍କର ଉକ୍ତି ଅଛି, ହେ ଅଳସ ଲୋକ, ତୁମ୍ଭେ ପିମ୍ପୁଡିଙ୍କର ନିକଟରେ ଯାଇ ତାହାର ଆଚରଣ ଦେଖି ଜ୍ଞାନବାନ୍ ହୁଅ ।

ଶିଷ୍ୟ । ଶୁଁଅପୋକର ବିଷୟ ବଡ ଆଶ୍ଚର୍ଯ୍ୟ କି ନାହିଁ ?

ଗୁରୁ । ହଁ, ପ୍ରଥମ ଦେଖିବାକୁ ସେମାନଙ୍କର ଆକୃତି ଅତି ସୁନ୍ଦର ଦେଖାଯାଏ ପୁଣି କିଛି ଦିନ ଉତ୍ତାରେ ବିକାର ପ୍ରାପ୍ତ ହେଲେଇ ଆଶ୍ଚର୍ଯ୍ୟରୂପ ପ୍ରଜାପତି ହୁଅନ୍ତି ।

ଶିଷ୍ୟ । ସେମାନଙ୍କର ଏକ ବର୍ଗରୁ କି ଅମ୍ଭମାନଙ୍କର ପଟ୍ଟସୂତ୍ର ଜନ୍ମଇ ?

ଗୁରୁ । ହଁ, ଗୁଟିପୋକରୁ ପଟ୍ଟସୂତ୍ର ଉତ୍ପନ୍ନ ହୁଅଇ । ସେମାନଙ୍କର ଉଦରରେ ଯେ କ୍ଷୁଦ୍ର ଫୁଟିକା ଅଛି ତହିଁରେ ଅଠା ଅଛି, ତହିଁରୁ ସେ ସୂତ୍ର ଜନ୍ମଇ । ସୁବର୍ଣ୍ଣର ତାର କରିବା ଅର୍ଥେ ଯେ ସୂକ୍ଷ୍ମ୨ ରନ୍ଧ୍ର ବିଶେଷ ଲୌହ ଯନ୍ତ୍ର ସ୍ୱର୍ଣ୍ଣକାର ଗୃହରେ ଥାଏ ତାହା ତୁମ୍ଭେ ଦେଖିଥିବ, ସେହି ଆକାର ଏକ ଯନ୍ତ୍ର ସେ ଗୁଟିପୋକର ମୁଖର ତଳେ ଅଛି ତାହାର ରନ୍ଧ୍ର ଦେଇ ସେହି ଅଠା ବାହାର ହୁଅଇ । ପ୍ରଥମରେ ଅଠା ପ୍ରସ୍ତୁତ ହୁଅଇ, ସେ ଅଠାରୁ ତାର ବାହାର ହେଲେ ସେ ଯନ୍ତ୍ରର ରନ୍ଧ୍ରରେ ଆକର୍ଷିତ ହୋଇ ଦୀର୍ଘ ସୂତ୍ରାକାର ହୁଅଇ ତାହାକୁଇ ରେସମ୍ ବୋଲି ଯାଏ ।

ଶିଷ୍ୟ । ତାହାଠାରୁ କିପ୍ରକାରେ ରେସମ୍ ପ୍ରସ୍ତୁତ ହୁଅଇ ?

ଗୁରୁ । ପ୍ରଥମରେ ଜଳପୂର୍ଣ୍ଣ ପାତ୍ରରେ ପଲୁକୁ ଅଗ୍ନିର ତାପରେ ସିଝାଇ କୁଁଚିରେ ସୂତ୍ରର ଅଗ୍ରଭାଗ ସନ୍ଧାନ କରି ପାଇଲେ ସେ ପାତ୍ରର ନିକଟସ୍ଥ ଏକ ଲୌହ ଯନ୍ତ୍ରର ରନ୍ଧ୍ରରେ ସେ ସୂତ୍ରାଗ୍ର ପ୍ରବେଶ କରାଇ କ୍ରମରେ ଅଉ କଳରେ ସୂତା ଗୁଡାଯାନ୍ତି, ଅଉ କେହି ବା ନଟାଇରେ ସୂତ୍ର ବାହାର କରଇ । ଏହି ଏକ୨ ଗୁଟିରେ ପ୍ରାୟ ତିନ ଶ ଗଜ ପରିମାଣ ସୂତ୍ର ବାହାର ହୁଅଇ । ତାହାର ଏମନ୍ତ ସୂକ୍ଷ୍ମତା ଯେ ଅଠ କି ଦଶ ତାର ଏକତ୍ର କଲେ ସାଧାରଣ କର୍ମର ଯୋଗ୍ୟ ହୁଅଇ । ଏହି ପଟ୍ଟସୂତାରେ ନାନାବିଧ ରେଶମୀ ବସ୍ତ୍ର ପ୍ରସ୍ତୁତ ହୁଅଇ ।

ଶିଷ୍ୟ । ଏହି ସମସ୍ତ କ୍ଷୁଦ୍ର କୀଟରେ ଅମ୍ଭମାନଙ୍କର ଉପକାର କି ହେବାକୁ ପାରଇ ?

ଗୁରୁ । କେତେକ୨ ମନୁଷ୍ୟଠାରୁଇ ସେ କୀଟମାନେ ଆପଣା୨ କର୍ମରେ ଏମନ୍ତ ତତ୍ପର ଓ ପରୋପକାରକ ଯେ ଅଳସ ଲୋକମାନେଇ ତାହା ଦେଖି ଶିକ୍ଷା ପାଇବାକୁ ପାରନ୍ତି ।

ଶିଷ୍ୟ । ଲାଖ କୀଟର ବିଷୟ ଅମ୍ଭେ କିଛି ଶୁଣିବାକୁ ବାଞ୍ଛା କରୁ । ସେ କିପ୍ରକାରେ ଜନ୍ମଇ ?

ଗୁରୁ । ଲାକ୍ଷା ନାମରେ ଏକ କୀଟ ଅଛି । ତାହା ନାନା ଦେଶରେ ମିଳଇ ପୁଣି ନାନା କର୍ମରେ ଲାଗଇ । ସେ କୀଟ ବହୁ ପ୍ରକାର ବୃକ୍ଷରେ ଜନ୍ମଇ, ବିଶେଷରେ ଅଶ୍ୱତ୍ଥ, ବଟ ଏହି ଦୁଇ ବୃକ୍ଷରେଇ ଅଧିକ । ଗଙ୍ଗାର ଦୁଇ ଧାରରେ ପର୍ବତର ବୃକ୍ଷରେ ଅନେକ୨ ଲାକ୍ଷା ଜନ୍ମଇ । ଏହିନିମନ୍ତେ ଏଦେଶର ଲୋକମାନେ ଅନାୟାସରେ ଲାକ୍ଷାଯୁକ୍ତ ଶାଖା ଭାଙ୍ଗି ନଗରରେ ଆଣି ବିକ୍ରୟ କରନ୍ତି । ଦକ୍ଷିଣ ଆମେରିକା ଦେଶରୁ କେତେକ ଲାକ୍ଷା ଆଣିକରି ଏଦେଶରେ ନାନା ଯାଗାରେ ସ୍ଥାପିତ ହୋଇଅଛି । ଏକାରଣ ଏଦେଶରେ ଯଥେଷ୍ଟ ଲାକ୍ଷା ପାଇ ପାରି ।

ଶିଷ୍ୟ । ସେ କୀଟରୁ କିପ୍ରକାରେ ଲାକ୍ଷା ଜନ୍ମଇ ?

ଗୁରୁ । କଁଥୁରା ଅସ୍ତ୍ରରେ ବୃକ୍ଷର ଶାଖାରୁ ସେ ସମସ୍ତ ଲାକ୍ଷାକୀଟ ଚାଞ୍ଛି ନେଇ ଏକ ପାତ୍ରର ମଧ୍ୟରେ ରଖଇ ପୁଣି ତାହା ନଷ୍ଟ କରି ଶୁଷ୍କ କରଇ । ଏହି କୀଟ ବିନାଶର ଦୁଇ ଉପାୟ ଅଛି । କେହି ଟୋକାଇ ମଧ୍ୟରେ ସେ ସମସ୍ତ କୀଟ ଭରି ଉଷ୍ଣ ଜଳରେ ବୁଡାନ୍ତି ତହିଁରେ କୀଟ ମଲେ ଖରାରେ ଶୁକାଇ ରଖନ୍ତି । କେହି ଅବା ତପ୍ତ ଲୋହା ହାଣ୍ଡିରେ ରଖି ଏକାବେଳେ ବିନାଶ ଓ ଶୁଷ୍କ କରନ୍ତି । ଏହି ପ୍ରକାରେ ଶୁଷ୍କ କଲେ ଯେବେ ବହୁତ ଦିନ ପର୍ଯ୍ୟନ୍ତ ରଖା ଯାଏ ତେବେହେଁ ତାହାର କିଛି କ୍ଷତି ନୁହଇ ।

ଶିଷ୍ୟ । ଏହି ଲକ୍ଷାର ଆମ୍ଭମାନଙ୍କର ଉପକାର କି?

ଗୁରୁ । ଏହା ଅନେକ କର୍ମରେ ଲାଗଇ । ଦେଖ, ତହିଁରେ ସ୍ତ୍ରୀଲୋକର ଚୁଡ଼ି ନାମରେ ହସ୍ତଭୂଷଣ, ମାଳା, ହାର, ଇତ୍ୟାଦି ଅନେକ୨ ଅଲଙ୍କାର ପ୍ରସ୍ତୁତ ହୁଅଇ ପୁଣି ପୂର୍ବ କାଳରେ କୌଣସି୨ ଔଷଧରେଇ ଲାଗନ୍ତା ପୁଣି ଏହିକ୍ଷଣେ ଯଉଁ ବନ୍ଦ କରିବାକୁ ଓ କାଷ୍ଠାଦି ପଟ୍ଟ ଚିତ୍ର କରିବାକୁ ପୁଣି ବସ୍ତ୍ର ରଙ୍ଗାଇବାକୁ ସର୍ବଦାଇ ତାହାର ପ୍ରୟୋଜନ ଜାଣିବ ।

ଶିଷ୍ୟ । ଅବଧାନ, ମାକଡ଼ସାର କି ଆମ୍ଭମାନଙ୍କର କିଛି ଉପକାର ଅଛି?

ଗୁରୁ । ହଁ ଅଛି । ସେମାନେ ଶତ୍ରୁ ବିନାଶାର୍ଥରେ ନିଜ ମୁଖରୁ ବିଷ ଉଦ୍ଗାରଣ କରନ୍ତି ଏହିନିମନ୍ତେ ଅମ୍ଭେମାନେ ସେମାନଙ୍କୁ ଘୃଣା କରୁ ମାତ୍ର ଆମ୍ଭର ବୋଧ ହୁଅଇ ସେମାନଙ୍କର ସେ ବିଷ କେବଳ ମକ୍ଷିକା ବିନାଶର ନିମନ୍ତେ ତହିଁରେ ଆମ୍ଭମାନଙ୍କର କୌଣସି ହାନିର ବିଷୟ ନାହିଁ । ଏନିମନ୍ତେ ଯେବେ ମାକଡ଼ସା ଆମ୍ଭମାନଙ୍କର ଅଗ୍ରାହ୍ୟ ଓ ଅସ୍ପୃଶ୍ୟ ହେବେହେଁ ସେମାନଙ୍କଠାରୁ ଆମ୍ଭମାନଙ୍କର ଉପକାର ଅଛି ଯେଣୁ ସେମାନେ ଛୋଟ ୨ ମକ୍ଷିକାଦିର ଭକ୍ଷଣ କରନ୍ତି ପୁଣି ବୃକ୍ଷର ଶାଖାରେ ଜାଲ ନିର୍ମାଣ କରନ୍ତି ତହିଁରେ ଅନେକ୨ ଫଳ ରକ୍ଷା ପାଏ ପୁଣି ଗୃହର ମଧ୍ୟରେ ସେମାନଙ୍କର ବାସ କରିବାରେ ଅନୁମାନ ହୁଅଇ କିଛି ଫଳ ଥିବ । ପୁଣି ଆମ୍ଭମାନଙ୍କର ହାନିଜନକ ଯେ ବାୟୁର ଦୁଷ୍ଟ ଗୁଣ ତାହା ଭୋଜନ କରଇ ଆମ୍ଭର ଏମନ୍ତ ବୋଧ ହୁଅଇ । ଦେଖ, ସେମାନଙ୍କର ଜାଲ ନିର୍ମାଣ କେମନ୍ତ ଆଶ୍ଚର୍ଯ୍ୟ । ବିଶେଷରେ କୋଠାର ମଧ୍ୟରେ ଯେ କରଇ ତାହା ଅଦ୍ଭୁତ ଆଶ୍ଚର୍ଯ୍ୟରୂପ ନିର୍ମିତ ହୁଅଇ ।

ଶିଷ୍ୟ । ହଁ ଅବଧାନ, ଗ୍ରୀଷ୍ମ କାଳରେ ଦେଖିଅଛୁଁ ପ୍ରମାଣ ଏହି ବୁଡ଼ିଆଣୀ ଏକ ବୃକ୍ଷର ଅନ୍ୟ ବୃକ୍ଷରେ ପୁଣି ଏକ ସ୍ଥାନର

ଗୃହାନ୍ତରେ ଅର୍ପଣାମାନଙ୍କର ସୂତ୍ରଯୋଗ କରନ୍ତି । ଭଲ ଅବଧାନ, ତାହା କି ପ୍ରକାରେ କରଇ ?

ଗୁରୁ । କେହି୨ ଅନୁମାନ କରନ୍ତି ଯେ ବୁଢିଅଣୀ ଉଡିବାକୁ ପାରଇ ତହିଁରେ ସେ କର୍ମ ସମ୍ପୂର୍ଣ୍ଣ କରଇ । ପୁଣି କେହି୨ ବୋଲନ୍ତି ବୁଢିଅଣୀ ପ୍ରଥମରେ ଏକ ବୃକ୍ଷର ଶାଖା ଡାଳର ଅଗରେ କଅବା ଏକ ଗୃହର ଓଲିରେ ଅପଣା ସୂତ୍ରଯୋଗ କରଇ ପଛେ ମୁଖରୁ ଅହୁରି ଅଧିକ ସୂତ୍ର ବାହାର କରି ସେ ସୂତ୍ରରେ ଝୁଲୁଁ୨ ଯେତେବେଳେ ସେହି ଦଗରୁ ପବନ ବହଇ ସେ କାଳରେ ଉଡି ଆଉ ବୃକ୍ଷ କି ଗୃହରେ ଲାଗିଲେ ଅଠାରେ ବନ୍ଦ ହୋଏ । ଏମନ୍ତ ହେଲେ ବୁଢିଅଣୀ ସେହି ସ୍ଥାନରେ ଥାଏ ସେ ସୂତ୍ର ଟାଣି ଯେବେ ବନ୍ଦ ଦେଖଇ ତେବେ ପୁଲର ପରି ତାହାର ଉପର ଦେଇ ଗମନାଗମନ କରନ୍ତି । ଆଉ କେବେ୨ ପବନ ବିନୁହିଁ ଏକ ବୃକ୍ଷରୁ ଆଉ ବୃକ୍ଷରେ ସୂତ୍ରର ଯୋଗ ଦେଖା ଯାଉଅଛି । ଏହିନିମନ୍ତେ କେହି୨ ଅନୁମାନ କରନ୍ତି ବୁଢିଅଣୀ ପ୍ରଥମରେ ଏକ ବୃକ୍ଷ ଅଗରେ ସୂତ୍ର ବନ୍ଦ କରି ସେ ସୂତ୍ରଯୋଗରେ ବୃକ୍ଷର ମୂଳ ଦେଇ ତଳେ ଓହ୍ଲାଏ । ପୁଣି ଆଉ ବୃକ୍ଷରୁ ଡାଳର ଅଗରେ ଉଠି ସେହି ସୂତ୍ର ବନ୍ଦ କରି ଟାଣ ଦେଇ ସମାନ କରନ୍ତି ।

ଶିଷ୍ୟ । ବୁଢିଅଣୀ କେତେ ପ୍ରକାର ଅଛି ?

ଗୁରୁ । ଏକ ଶ ବିଂଶ ପ୍ରକାରେ ବୁଢିଅଣୀ ଅଛି ଏ ଦେଶରେ ପ୍ରାୟ ସମସ୍ତ ପ୍ରକାରଇ ଦେଖା ଯାଉଅଛି ।

ଶିଷ୍ୟ । ଏମାନଙ୍କର ପ୍ରକାର ଭେଦ କଉପେ ଜଣା ଯାଏ ?

ଗୁରୁ । ସେମାନଙ୍କର ଚକ୍ଷୁର ବିଶେଷରେ ବିଶେଷ ବୋଧ ହୁଅଇ ।

ଶିଷ୍ୟ । ମାକଡସାଗଣର କେତେ ଚକ୍ଷୁ ଅଛି ?

ଗୁରୁ । ପ୍ରାୟ ସମସ୍ତ ମାକଡସାରଇ ଅଠ ଚକ୍ଷୁ ଥାଏ । ଆଉ

କୌଣସି ମାକଡସା ଜାତିର ଶରୀରରେ ପୃଷ୍ଠ ଭାଗରେ କୋଣା-କୋଣି ଅଠ ଚକ୍ଷୁ ଥାଏ । ପୁଣି କୌଣସି ଜାତିର ସମ୍ମୁଖ ଭାଗ-ରେ ଅର୍ଦ୍ଧ ଚନ୍ଦ୍ରାକାରରେ ଛଅ ଉପରେ ଚକ୍ଷୁ ଥାଏ । ପୁଣି କୌଣସି ମାକଡସା ଜାତିର ସମ୍ମୁଖ ଭାଗରେ ସିଧା ଦୁଇ ରେଖା-ରେ ପୃଷ୍ଠ କରି ଅଠ ଚକ୍ଷୁ ଥାଏ ।

ଶିଷ୍ୟ । ଏହି ମାକଡସାଗଣ କି ଭୋଜନ କରନ୍ତି ?

ଗୁରୁ । ସେମାନେ କୀଟ ସମସ୍ତଙ୍କୁ ଆକ୍ରମଣ କରି ଆଗେ ପରାସ୍ତ କରି ସେମାନଙ୍କୁ ଭକ୍ଷଣ କରନ୍ତି । ପୁଣି ସର୍ପର ନ୍ୟାୟ ବରଷକୁବରଷ କାତି ଛାଡନ୍ତି ଅର୍ଥାତ୍ ଏକାନ୍ତ ସ୍ଥାନରେ ସେମାନେ କୌଣସି ଏକ ଅବଲମ୍ବନ କରି ଝୁଲୁଁ ଖୋଳପାରୁ ବାହାରି ହୁଅନ୍ତି । ପୁଣି ଏହି ମାକଡସାଗଣ ଏମନ୍ତ ପେଟୁକ ହେଲେହେଁ ଅନ୍ୟ କୀଟମାନେ ସେମାନଙ୍କୁ ବଧ କରି ଭକ୍ଷଣ କରନ୍ତି । ଏନିମନ୍ତେ ଦେଖ, ଅନ୍ୟ କୀଟଠାରୁ ତାଡିତ, ବିନାଶ, ଭକ୍ଷିତ ନୁହନ୍ତି ଏମନ୍ତ କୀଟହିଁ ଅପ୍ରସିଦ୍ଧ ।

---

## କୃମି ବିଷୟ ।

ଗୁରୁ । ଅବଶେଷ ଜନ୍ତୁ ଅର୍ଥାତ୍ କୃମିର ବିଷୟ ଆମ୍ଭେମାନେ ଏବେ ବିବେଚନା କରି ।

ଶିଷ୍ୟ । କୃମି ଜାତିର କେତେ ବର୍ଗ ଅଛି ?

ଗୁରୁ । ସେମାନଙ୍କର ପାଞ୍ଚ ବର୍ଗ ।

ପ୍ରଥମ ବର୍ଗର ମଧ୍ୟରେ ଜୋକ, ଉଦରର କୃମି, ଇତ୍ୟାଦି ଯେଉଂ-ମାନଙ୍କର ରକ୍ତର ପରି ଶରୀର ।

ପୁଣି ଶାମୁକ ଆଦି ଯେଉଂମାନଙ୍କର ଶରୀର ଅନାବୃତ ଓ ବିଶେଷ ଅବୟବଯୁକ୍ତ ସେମାନେ ଦ୍ୱିତୀୟ ବର୍ଗର ମଧ୍ୟରେ ଗଣିତ ହୁଅନ୍ତି ।

ପୁଣି କୃମି ଶରୀରର କାଠ ଓ ଶଙ୍ଖରେ ତଥା କୋମଳ ଶରୀର ଏମନ୍ତ ଯେ ଶଙ୍ଖାଦି ସେମାନେ ତୃତୀୟ ବର୍ଗରେ ବିଭକ୍ତ ହୁଅନ୍ତି । ସେ ଶଙ୍ଖ କାଠ ତିନ ପ୍ରକାର । ପ୍ରଥମ ଏକ ଖଣ୍ଡ ଦେହନ୍ତୁ ଯଥା କଉଡ଼ି ଇତ୍ୟାଦି । ଦ୍ୱିତୀୟ ଦ୍ୱିଖଣ୍ଡ ଅବୟବରେ ମିଳିତ ଯଥା ଶାମୁକା ଓ ଗେଣ୍ଡା ଇତ୍ୟାଦି । ପୁଣି ନାନା ଖଣ୍ଡ ଦେହବନ୍ତ ଯେ କାଠ ସେମାନେ ତୃତୀୟର ମଧ୍ୟରେ ଗଣିତ । ଏହି ତୃତୀୟ ପ୍ରକାର କାଠ ବହୁତ ନାହିଁ । ଏହି ତିନ ପ୍ରକାର ଶଙ୍ଖର ମଧ୍ୟରେ ନାନାଗଣ ଓ ନାନା ପ୍ରକାର ଅଛି । ଏ ବିଷୟର ବିଶେଷ ଜ୍ଞାନକୁ ଶଙ୍ଖବିଦ୍ୟା ବୋଲା ଯାଏ ।

ଆଉ ପ୍ରବାଳ ଇତ୍ୟାଦି ଯେଉଁମାନଙ୍କୁ ଅପ୍ରାଣିର ପରି ବୋଧ ହୁଅଇ ସେମାନେ ଚତୁର୍ଥ ବର୍ଗର ମଧ୍ୟରେ ଗଣିତ ହୁଅନ୍ତି ।

ପୁଣି ପ୍ରଥମ, ଦ୍ୱିତୀୟ ବର୍ଗର କେବଳ ଆକାର ସ୍ଥାନର ବିଶେଷ କରି ଯାଏ ଏମନ୍ତ କୃମି ସମସ୍ତ ପଞ୍ଚମ ବର୍ଗର ମଧ୍ୟରେ ଗଣିତ ହୁଅନ୍ତି । ସେମାନେ ଗୋଳିଆ ପାଣିରେ ଅକସ୍ମାତ୍ ଜନ୍ମନ୍ତି ମାତ୍ର କି ପ୍ରକାରେ ଜନ୍ମନ୍ତି ତାହା ଜଣା ନ ଯାଏ ।

ଶିଷ୍ୟ । ଅବଧାନ, ତେବେ ଆମ୍ଭର ବୋଧ ହୁଅଇ ଯେ ସମସ୍ତ ସ୍ଥାନରେଇ ପ୍ରାଣୀ ଅଛନ୍ତି ?

ଗୁରୁ । ଏହି ସମସ୍ତ କୃମିଠାରୁ ହିଁ ଏମନ୍ତ କ୍ଷୁଦ୍ର୨ ଜନ୍ତୁ ଅଛନ୍ତି ଯେ ଚକ୍ଷୁ କି ଦୂରବୀନରେ ସେ ସମସ୍ତଙ୍କୁ କେହି ଲକ୍ଷ କରିବାକୁ ନ ପାରନ୍ତି ।

ଶିଷ୍ୟ । ଏହି ପୂର୍ବ କଥିତ କୃମିଗଣର ମଧ୍ୟରେ ଯେଉଁମାନଙ୍କର ପିଠିରେ ଶଙ୍ଖ ଅଛି ସେମାନଙ୍କର ବିଷୟ ଅନେକ ବିବେଚନା କରିଅଛୁଁ ପୁଣି ସେମାନେ କି ପ୍ରକାରେ ଆପଣାମାନଙ୍କର ଏମନ୍ତ ଗୃହ ନିର୍ମାଣ କରନ୍ତି ଓ ତାହା ଆପଣାମାନଙ୍କର ସଙ୍ଗରେ ସର୍ବଦା ନେଇ ଭ୍ରମଣ କରନ୍ତି ଏ ବିଷୟରେ ଆମ୍ଭର ବଡ଼ ଆଶ୍ଚର୍ଯ୍ୟ ବୋଧ ହେଉଅଛି ।

ଗୁରୁ । ଏ ଆଶ୍ଚର୍ଯ୍ୟର ବିଷୟ ପ୍ରମାଣ । ସେମାନେ ଆପଣା ମାନଙ୍କର ଗୃହ ସଙ୍ଗରେ ନେଇ ଭ୍ରମଣ କରନ୍ତି ଏହା ତୁମ୍ଭେ ଯେ ସଚେଷ୍ଟ ଚକ୍ଷୁରେ ଦେଖିଅଛ ତହିଁରେ ଆମ୍ଭେ ଆଶ୍ଚର୍ଯ୍ୟ ବୋଧ ନ କରୁ । ପ୍ରତ୍ୟେକ ଜନ୍ତୁର ଏକ ୨ ବାସଗୃହ ଅଛି । ସେ ସଙ୍ଖର ମଧ୍ୟରେ ଯେ ଶାମୁକ କୃମି ଥାଏ ତାହାର କଠିଣତା, ଲଘୁତା ଏହି ଦୁଇ ଗୁଣ ଅଛି । ଦେଖ, ଏହି ଦୁଇ ଗୁଣ ଏକଠାବେ ଥିବା ଦୁର୍ଘଟ ପୁଣି ଶଙ୍ଖର ଏମନ୍ତ ଗୁଣ ଯେବେ ନୁହନ୍ତା ତେବେ ସେମାନେ ରକ୍ଷାଇ ନ ପାନ୍ତେ ପୁଣି ସ୍ଥାନେ ୨ ଭ୍ରମଣ କରିବାକୁହି ନ ପାରନ୍ତେ । ଶୀତକାଳ ଉପସ୍ଥିତ ହେଲେ ସେମାନେ କୌଣସି ଗାତ ମଧ୍ୟରେ ପ୍ରବେଶ ହୋଇ ବାସ କରନ୍ତି । ତହିଁରେ ସେହି ସ୍ଥାନରେ ସେମାନଙ୍କର ଶରୀରରୁ ଅଠାର ପରି ଦ୍ରବ୍ୟ ବାହାର ହେଲେ ତହିଁରେ ସେ ଶଙ୍ଖଗଣର କବାଟୀ ଜନ୍ମାଇ । ଏହିରୂପେ ସେମାନେ ସୁଖରେ ଶୀତକାଳ କ୍ଷେପଣ କଲେ ଗ୍ରୀଷ୍ମ କାଳରେ ମୁଖର ସେହି କବାଟୀ ବାହାର କରି ଏଣେତେଣେ ଭ୍ରମଣ କରନ୍ତି ।

ଶିଷ୍ୟ । ସେ ଶାମୁକର ଚକ୍ଷୁ ବିଷୟରେ କିଛି ଆଶ୍ଚର୍ଯ୍ୟ ଶୁଣିଥିବା ଏମନ୍ତ ଆମ୍ଭର ମନରେ ହେଉଅଛି ।

ଗୁରୁ । ହଁ ଶୁଣି ଥିବା ଯେଣୁ ସେମାନଙ୍କର ଚକ୍ଷୁର ବିଷୟ ବଡ ଆଶ୍ଚର୍ଯ୍ୟ ଓ ଅସମ୍ଭବ ପ୍ରମାଣ । ସେମାନେ ପିଠିରେ ଆପଣା ୨ ଗୃହର ଭାର ବହି କରି ଭୂମିରେ ଚଳନ୍ତି ଏହିନିମନ୍ତେ ସେମାନଙ୍କର ଶିଙ୍ଗର ଅଗ୍ରଭାଗରେ ଚକ୍ଷୁ ସ୍ଥାପିତ ହୋଇଅଛି ଆଉ ତାହା ଯେବେ ନୁହନ୍ତା ତେବେ କାହାଠାରୁ ପଳାଇବାକୁ ହୁଅଇ ପୁଣି କାହାର ନିକଟରେ ଯିବାକୁ ହୁଅଇ ତାହା କିଛିହି ନିର୍ଣ୍ଣୟ କରିବାକୁ ନ ପାରନ୍ତେ ଏହି ନିମନ୍ତେ ଦୂରବିନର ପରି ସେମାନଙ୍କର ଚକ୍ଷୁ ହୋଇଅଛି । ବାଳକମାନେ ସେ ଶୁଣ୍ଢାକୁ ଶିଙ୍ଗ କହୁ ବୋଲନ୍ତି । ସେ ଶିଙ୍ଗ ବୃନ୍ତ ନଳୀ ପ୍ରତ୍ୟେକର ଅଗ୍ର ଭାଗରେ ଏକ ୨ ପରକଳା ଅଛି । ସେହି ବୃନ୍ତ

ଶିଙ୍ଗକୁ ଦର୍ଶନଶିରା କହିବାକୁ ପାର । ସେ ପ୍ରତ୍ୟେକ ଶିରାର ଅଗ୍ରଭାଗରେ ଏକ୨ କରି ସୁନ୍ଦର କୃଷ୍ଣ ଚକ୍ଷୁ ଥାଏ । ଶମ୍ବୁକମାନେ ସେ ଚକ୍ଷୁ ଉପରେ ଉଠାଇବାକୁ କି ସବୁ ଅତେ ଫେରାଇବାକୁ ପାରନ୍ତି ପୁଣି ଦୂରବୀନର ପ୍ରାୟେ ବଢାଇ ଓ ସଙ୍କୁଡାଇ ପାରନ୍ତି ।

ଶିଷ୍ୟ । ଅମ୍ଭେ କେବେ ସେମାନଙ୍କର ପାଦ ଦେଖି ନାହୁଁ ।

ଗୁରୁ । ସେ ସତ୍ୟ । ସୃଷ୍ଟି ବିଷୟରେ ପରମେଶ୍ୱରର ଯେ ନାନା ପ୍ରକାର ଆଶ୍ଚର୍ଯ୍ୟ ଉପାୟ ତାହା ଯେମନ୍ତ ସମସ୍ତେ ଦେଖିବାକୁ ପାଅନ୍ତି ଏନିମନ୍ତେ ସେମାନଙ୍କର ପାଦ ଦୁଇର ବଦଳେ ଦୁଇ ମାଂସପିଣ୍ଡର ଚର୍ମର ସୃଷ୍ଟି ହୋଇଅଛି । ସେ ମାଂସପିଣ୍ଡକୁ ସେମାନେ ଇଚ୍ଛାନୁସାରେ ବଢାଇ ଓ ସଙ୍କୁଡାଇବାକୁ ପାରନ୍ତି ଏକାରଣ ତହିଁରେ ସେମାନଙ୍କର ସ୍ୱଚ୍ଛନ୍ଦରେ ଅତଯାତ ହୁଅନ୍ତି । ପୁଣି କୌଣସି ପ୍ରକାରରେ ଯେମନ୍ତ ସେମାନଙ୍କର ହାନି ନ ଜନ୍ମଇ ଏନିମନ୍ତେ ସେମାନେ ଗଡସ୍ୱରୂପ ଶଙ୍ଖକୁ ସଙ୍ଗେ ଘେନି ଯାନ୍ତି । ଆଉ ଗମନ ସମୟରେ ଯେମନ୍ତ ନ ଠେଲନ୍ତି ଏନିମନ୍ତେ ସେମାନଙ୍କର ଅଠା ସ୍ୱରୂପ ପୂଜ ବାହାର ହୁଅଇ ତାହା କେବଳ ନୋହେ କୌଣସି ପ୍ରକାରେ ସେମାନଙ୍କର ଶରୀରର ଜଳାଦି ପ୍ରବେଶ ନୋହିବାର ନିମନ୍ତେ ଶରୀରସ୍ଥ ଝାଲ ବହିବା ରନ୍ଧ୍ର ସମସ୍ତ ବନ୍ଦ ରଖନ୍ତି ।

ଶିଷ୍ୟ । ଅବଧାନ, ଅନୁଗ୍ରହ କରି ଅମ୍ଭକୁ ଏହି ଶଙ୍ଖର ବିଷୟ କିଛୁ ବୋଲନ୍ତୁ ।

ଗୁରୁ । ଯେ ସମୟ ଅଣ୍ଡାରୁ ଶମ୍ବୁକ ବାହାର ହୁଅଇ ସେ କାଳରେ ସେମାନଙ୍କର ଶଙ୍ଖ ଅତି କ୍ଷୁଦ୍ର ଓ କୋମଳ ଥାଏ ମାତ୍ର କ୍ରମେ୨ ବୃଦ୍ଧି ପାଏ । ପୁଣି ପ୍ରଥମ ଜାତ ଚକ୍ରାକାର ଶଙ୍ଖର ଉପରେ ଆଉ ଚକ୍ରାକାର ଅବୟବ ଜନ୍ମଇ । ଏହିରୂପେ ପ୍ରଥମର ଉପରେ ଦ୍ୱିତୀୟ ପୁଣି ଦ୍ୱିତୀୟର ଉପରେ ତୃତୀୟ ଇତ୍ୟାଦି ଜନ୍ମଇ । ମାତ୍ର ସେ ଶଙ୍ଖର ପାର୍ଶ୍ୱ ଭାଗରେ ଶରୀର ବୃଦ୍ଧି ନ ପାଇ କେବଳ

ସମ୍ମୁଖ ଭାଗରେ ବୃଦ୍ଧି ପାଏ । ଏଥିରେ ଜଣାଯାଏ ଶମ୍ବୁକର ସେହି ଭାଗରେ ବୃଦ୍ଧି ସମ୍ଭବ ହୁଏ । ସେ ଶଙ୍ଖଜନକ ଯେ ଅଠା-ସ୍ୱରୂପ ଚୂନ ଓ ବାଲୁକାରୂପ ଅତି ସୂକ୍ଷ୍ମ ପରମାଣୁ ସେମାନଙ୍କର ଶରୀର ମଧ୍ୟରେ ଥାଏ ତାହା ଦୁଇ ମିଳିତ ହୋଇ ଶଙ୍ଖର ସମସ୍ତ ଅବୟବକୁ ବୃଦ୍ଧି କରଇ ପୁଣି ଶୋଭା ବନ କରଇ ଏଥିରେ କୃମିର ଶଙ୍ଖ କପ୍ରକାରେ ଜନ୍ମଇ ତାହା ତୁମ୍ଭର ବୋଧ ହେବାକୁ ପାରଇ ।

ଶିଷ୍ୟ । ଭଲା ଅବଧାନ, ଏହି ଶମ୍ବୁକ କି ସର୍ବ ଦେଶରେ ମିଳଇ ?

ଗୁରୁ । ହାଁ, ପୁଣି ଆଉ ସବୁ ଶଙ୍ଖଠାରୁ ବର୍ଣ୍ଣରେ, ପରିମାଣ-ରେ, ଚିହ୍ନରେ ଏହି ଶାମ୍ବୁକର ନାନା ପ୍ରକାର ଆଶ୍ଚର୍ଯ୍ୟ ଗୁଣ ଅଛି । ଏଦେଶରେ ଓ ଦକ୍ଷିଣ ଇଉରୋପ ଦେଶରେ ଶାମ୍ବୁକର ଶଙ୍ଖ ବଡ଼ ୨ ଜନ୍ମଇ ମାତ୍ର ଯେତେ ଉତ୍ତରରେ ଯିବ ତେତେ ସେମାନଙ୍କର ପରି-ମାଣ କ୍ଷୁଦ୍ର ୨ ଓ ଅଳ୍ପ ୨ ରଙ୍ଗ ଦେଖିବ ।

ଶିଷ୍ୟ । ଭଲା ଅବଧାନ, କୌଣସି ଶାମ୍ବୁକ ଖାଦ୍ୟର ନିମନ୍ତେ କି ଭଲ ନୁହଇ ?

ଗୁରୁ । ଏକ ପ୍ରକାର ଶାମ୍ବୁକ ଉତ୍ତମ ଖାଦ୍ୟ ଅଟେ । ଇଂଲଣ୍ଡ ଦେଶରେ ତାହା ସ୍ୱର ଯବଠାରୁ ଛୋଟ ଯବ ପରିମାଣରେ ମିଳଇ ପୁଣି ଇଉରୋପର ଆଉ ଦେଶରେ ତାହାଠାରୁଇ ବଡ ମିଳଇ । ପୁରାତନ ରୂମ ଦେଶର ମଧ୍ୟରେ ସେ ଶାମ୍ବୁକ ଖାଦ୍ୟର ନିମନ୍ତେ ବଡ ଉତ୍ତମ ସେ ନିମନ୍ତେ ଧନ ଲୋକମାନେ ଖାଇବାରେ ସର୍ବଦା ଜୀଅଇ ରୁଖନ୍ତି ଓ ବଡ଼ ୨ ହେଲେ ଭକ୍ଷଣ କରନ୍ତି ।

---

## ବୃକ୍ଷ ଓ ପୁଷ୍ପାଦି ବିଷୟ ।

ଗୁରୁ । ଦୟାମୟ ସୃଷ୍ଟିକର୍ତ୍ତା ଆମ୍ଭମାନଙ୍କର ବସତିର ନିମନ୍ତେ ଏହି ପୃଥିବୀର ସୃଷ୍ଟି କରିଅଛନ୍ତି । ପୁଣି ଆମ୍ଭମାନଙ୍କର ରକ୍ଷା ଓ ସୁଖ ଯହିଁରେ ହୁଅଇ ଏମନ୍ତ ନାନା ପ୍ରକାର ବସ୍ତୁ ଅର୍ଥାତ୍ ବୃକ୍ଷ, ଲତା,

ଫଳ, ପୁଷ୍ପ, ଇତ୍ୟାଦି ଉତ୍ପନ୍ନ କରୁଅଛନ୍ତି । ସୃଷ୍ଟିକାଳଠାରୁ ଯୁଗେ୨ ଏହି ସମସ୍ତ ସୃଷ୍ଟି ହୋଇ ରକ୍ଷିତ ହେଉଅଛନ୍ତି ମାତ୍ର ଏହି ପର୍ଯ୍ୟନ୍ତ ଆମ୍ଭମାନଙ୍କର ବୋଧାନୁସାରେ ମନୁଷ୍ୟ, ପଶୁ, ପକ୍ଷୀ, ମତ୍ସ୍ୟ, କୃମି, କୀଟ, ପତଙ୍ଗ, ଇତ୍ୟାଦି ପ୍ରାଣୀ ଏକରୂପେଇ ସୃଷ୍ଟି ହୋଇ ଆସୁଛନ୍ତି ତଦ୍ଭିନ୍ନ କୌଣସି ପ୍ରାଣୀ କି ଆଉ କୌଣସି ବସ୍ତୁ ନୂତନ ରୂପରେ ସୃଷ୍ଟି ହୁଅଇ ନାହିଁ । ଏହାର ମଧ୍ୟରେ ଏକ କଥା ତୁମ୍ଭର ମନୋଯୋଗର ଯୋଗ୍ୟ ଅଛି । ଦେଖ, ଏହି ସମସ୍ତ ଅସଂଖ୍ୟ ବୃକ୍ଷାଦି ଏକ ମୃତ୍ତିକାରେ ରୋପିତ, ଏକ ସୂର୍ଯ୍ୟ କିରଣରେ, ଏକ ମେଘର ବୃଷ୍ଟିରେ ବର୍ଦ୍ଧିତ ହେଲେହେଁ ଏକ ବୃକ୍ଷରୁ ଆଉ ବୃକ୍ଷର ଆସ୍ୱାଦନ, ଗନ୍ଧ, ବର୍ଣ୍ଣର ଅନେକ ପ୍ରଭେଦ ହେଉଅଛି ।

ଶିଷ୍ୟ । ଏହି ସମସ୍ତ ବୃକ୍ଷ ଜାତିରେ, ବର୍ଗରେ, ଗଣରେ, ପ୍ରକାରରେ ବିଭକ୍ତ ଅଛନ୍ତି କି ନାହିଁ ।

ଗୁରୁ । ହଁ, ପୃଥିବୀରେ ଯେ୨ ବୃକ୍ଷ ଅଛନ୍ତି ସେ ସମସ୍ତଇ ବିଜ୍ଞ ପଣ୍ଡିତଗଣଙ୍କ ଦ୍ୱାରା ବିଭକ୍ତ ହୋଇଅଛନ୍ତି । ଜାତିର ମଧ୍ୟରେ ବର୍ଗ, ବର୍ଗର ମଧ୍ୟରେ ଗଣ ଅଛି, ଗଣର ମଧ୍ୟରେ ପ୍ରକାର ଅଛି ପୁଣି ପ୍ରକାରର ମଧ୍ୟରେ ନାନା ବିଶେଷ ଅଛି ।

ଶିଷ୍ୟ । ବୃକ୍ଷାଦିର ଜାତି ଓ ବର୍ଗାଦିର ନାମ କି ପ୍ରକାରେ ନିର୍ଣ୍ଣୟ ହୁଅଇ ?

ଗୁରୁ । ପାଖୁଡ଼ାରେ ହୁଅଇ । ପୁଣି ଯାହାର ପୁଷ୍ପର ଏକ ପାଖୁଡ଼ା ଥାଏ ସେ ପ୍ରଥମ ଜାତି ହୁଅଇ ପୁଣି ଯେବେ ଦୁଇ ପାଖୁଡ଼ା ତେବେ ଦ୍ୱିତୀୟ ଜାତି ହୁଅଇ । ଏହି ପ୍ରକାର ତିନ ଚତୁର୍ଥାଦି ପାଖୁଡ଼ା ଥିଲେ ତୃତୀୟ ଚତୁର୍ଥାଦି ଜାତି ହୁଅଇ ଜାଣିବ । ଆଉ ଗର୍ଭଶିରାରେ ବର୍ଗର ନିର୍ଣ୍ଣୟ ହୁଅଇ ଅର୍ଥାତ ଯାହାର ପୁଷ୍ପ ମଧ୍ୟରେ ଏକ ଗର୍ଭଶିରା ଥାଏ ସେ ପ୍ରଥମ ବର୍ଗର ମଧ୍ୟରେ ଗଣିତ ହୁଅଇ ପୁଣି ଦୁଇ ଗର୍ଭଶିରା ଥିଲେ ଦ୍ୱିତୀୟ ବର୍ଗର ମଧ୍ୟରେ ଗଣିତ ହୁଅଇ ।

ଏହିରୂପ ତିନ ଚତୁର୍ଥାଦି ଗର୍ଭଶିରାରେ ଭୂଷିତ ଚତୁର୍ଥାଦି ବର୍ଗ ହୁଅଇ ଜାଣିବ । ପୁଣି ମନୁଷ୍ୟମାନଙ୍କର ଇଚ୍ଛାନୁସାରେ ଗଣ ନିର୍ଣ୍ଣିତ ହୁଅଇ ଓ ପୁଷ୍ପର ଗୁଣ ବିଶେଷରେ ପ୍ରକାରର ନିର୍ଣ୍ଣୟ ହୁଅଇ ।

ଶିଷ୍ୟ । ବୃକ୍ଷର କେତେ ଜାତି ଅଛି?

ଗୁରୁ । ବୃକ୍ଷର ୨୪ ଜାତି ଏହି ଜାତିର ମଧ୍ୟରେ ଏକ ଶ ବର୍ଗ ଅଛି ପୁଣି ଏହି ବର୍ଗର ମଧ୍ୟରେ ଦୁଇ ସହସ୍ର ଗଣ ଅଛି । ପୁଣି ଏହି ଗଣର ମଧ୍ୟରେ କୋଡିଏ ସହସ୍ର ପ୍ରକାର ଅଛି ପୁଣି ଏହି ପ୍ରକାରର ମଧ୍ୟରେ ସୁନ୍ଦର କୃଷକ, ସାର ମୃତ୍ତିକା, ବାୟୁ ବିଶେଷ, ଇତ୍ୟାଦିରେ ଅସଂଖ୍ୟ ପ୍ରଭେଦ କରା ଯାଏ ।

ଶିଷ୍ୟ । ବୃକ୍ଷଗଣ କାହିଁରୁ ଉତ୍ପନ୍ନ ହୁଅଇ ।

ଗୁରୁ । ବୀଜରୁ ହୁଅଇ ପୁଣି ବୀଜର ରକ୍ଷା ନିମନ୍ତେ ତାହା ଖୋଲରେ ଉତ୍ପନ୍ନ ଯାଏ । ଏହି ପ୍ରତ୍ୟେକ ବୀଜରୁ ଆପଣା୨ ଜାତି ଅନୁସାରରେ ବିଶେଷ୨ ବୃକ୍ଷ ଜନ୍ମଇ । ଏହି ବୀଜ କୋଡିଏ ସହସ୍ର ପ୍ରକାର ଜଣା ଯାଉଅଛି ତାହା ଛଡା ଅନୁମାନ ହୁଅଇ ଅନ୍ୟର ଅଧିକ ପ୍ରକାର ଥିବାକୁ ପାରଇ । ସେ ବୀଜ ବୁଣିଲେ ତାହାର ମୂଳ ତଳେ ବାହାର ହୁଅଇ ପୁଣି କାଣ୍ଡ ଭାଗ ଉପରେ ଉଠଇ ।

ଶିଷ୍ୟ । ସେ ବୃକ୍ଷଗଣ କିରୂପରେ ବୃଦ୍ଧି ପାଏ?

ଗୁରୁ । ବାୟୁ, ଜଳ, ଗ୍ରୀଷ୍ମ, ଖତମୃତ୍ତିକା, ଇତ୍ୟାଦିରେ ମୂଳ ଉପମୂଳର ଛିଦ୍ରରେ ରସ ପ୍ରବେଶ ହେଲେ ତହିଁରେଇ ସେ ସମସ୍ତ ବୃଦ୍ଧି ପାଏ ।

ଶିଷ୍ୟ । ବୃକ୍ଷର ଛାଲ ଓ ପତ୍ରର ପ୍ରୟୋଜନ କି?

ଗୁରୁ । ପ୍ରୟୋଜନ ଅଛି । ଛାଲରେ ବୃକ୍ଷ ଆଘାତରୁ ରକ୍ଷା ପାଏ ବିଶେଷରେ ଛାଲ ରସାକର୍ଷଣ କଲେ ସେହି ରସରେ ଶାଖାଦିର ପୋଷଣ ହୁଅଇ ପୁଣି କାଙ୍କର ଓ ବୃଷ୍ଟି ଗ୍ରହଣ କରିବାର ନିମନ୍ତେ ତାହାର ପତ୍ର ହୋଇଅଛି ।

ଶିଷ୍ୟ । ପ୍ରତ୍ୟେକ ବୃକ୍ଷରେ ଅନେକ୨ ପତ୍ର ଅଛି ପୁଣି ସମସ୍ତ ପତ୍ର ସମାନ ନୋହେ କପାଁ ?

ଗୁରୁ । ଈଶ୍ୱରଙ୍କର ସର୍ବସୃଷ୍ଟି ବିଷୟରେ ନାନା ବିଶେଷ ଅଛି । ଜଗତର ମଧ୍ୟରେ ପ୍ରାପ୍ତ ଦୁଇ ବସ୍ତୁ ଏକ ସମାନ ନ ମିଳଇ । ଅଉ ଦେଖ, ପତ୍ରର ଉପରେ ଜଳ ବସି ଯେମନ୍ତ ହାନି ନ ଜନ୍ମଇ ଏହି ନିମନ୍ତେ ପତ୍ରର ଉପର ଭାଗ ଚିକ୍କଣ ଥାଏ । ପୁଣି ଦୃଷ୍ଟିଦେଶ ଯେମନ୍ତ କାକର ଗ୍ରହଣର ଯୋଗ୍ୟ ହୁଅଇ ଏକାରଣ ପତ୍ରର ପିଠି-ଅଡ ଅଚିକ୍କଣ ଓ ଅଁସୁଆଁସୁଆ ହୁଅଇ ।

ଶିଷ୍ୟ । ଲୋକର ଉପକାରର ନିମନ୍ତେ ଅଫଳନ୍ତ ବୃକ୍ଷର ପ୍ରୟୋଜନ କି ?

ଗୁରୁ । ପ୍ରୟୋଜନ ଅଛି । ଦେଖ, ବଣ ବୃକ୍ଷ ସମସ୍ତ ଅତି ସୁଦୃଶ୍ୟ ହୁଅଇ ପୁଣି ପଥିକମାନଙ୍କର ସନ୍ତାପ ଦୂର କରିବାର ନିମନ୍ତେ ସୁଶୀତଳ ଛାୟା ବିସ୍ତାର କରଇ । ଅଉ ଗୃହାଦି ରଚନା, ଜାହାଜର ମାସ୍ତୁଲ, କୃଷିକର୍ମ, ଗୃହୋପକରଣ, ଔଷଧ, ମୋଚିର କର୍ମ, ଶିଳ୍ପକର୍ମ, ପୁଣି ରନ୍ଧନା, ଇତ୍ୟାଦି କର୍ମର ନିମନ୍ତେ ସେ ବଣର ବୃକ୍ଷ ସମସ୍ତ ବଡ ଉପକାରୀ ହୁଅନ୍ତି ।

ଶିଷ୍ୟ । ଅବଧାନ, ବୃକ୍ଷରୁ ମନୁଷ୍ୟର ଏତେ ଉପକାର ଏହା ଅମ୍ଭେ ଆଗେ ଜାଣି ନ ଥିଲୁଁ । ଯେ୨ ବୃକ୍ଷର ଫଳ ହୁଅଇ କେବଳ ସେହି ସମସ୍ତଙ୍କୁଇ ଭଲ ବୋଲନ୍ତୁଁ ।

ଗୁରୁ । ଫଳବନ୍ତ ବୃକ୍ଷର ଅନେକ୨ ପ୍ରକାର ଅଛି । ଅମ୍ଭମାନଙ୍କର ଆହାର, ରକ୍ଷା, ହିତ, ସୁଖ, ଆସ୍ୱାଦନ, ତୃପ୍ତି କରିବାକୁ, ପୁଣି ଗ୍ରୀଷ୍ମ କାଳରେ ତୃଷ୍ଣା ନିବାରଣ ଓ ଶାନ୍ତ କରିବାକୁ ଆମ୍ବ, ପିଜୁଳି, ନାରଙ୍ଗ, ଲେମ୍ବୁ, ବେଲ, ପଣସ, ଆତ, ଇତ୍ୟାଦି ଉତ୍ତମ୨ ଫଳ ଯେ କରିଅଛନ୍ତି ପୁଣି କୋବି, ଫୁଲକୋବି, ମୂଳା, ଶଲଗମ, ଗାଜର, ଅଳୁ, ଓଲୁଅ, ବାଇଗଣ, ଲାଉ, ପଟୋଳ, ଇତ୍ୟାଦି ବଗିଚାରେ

ଉତ୍ପନ୍ନ କରିଅଛନ୍ତି ଆମ୍ଭମାନଙ୍କର ସେହି ପିତା କେମନ୍ତ ଦୟାମୟ ଏହା ଅବଶ୍ୟ ମନରେ କରିବାର ଉଚିତ ।

ଶିଷ୍ୟ । ଭଲ ଅବଧାନ, ଏହି ଦେଶର ମଧ୍ୟରେ କେଉଁ୨ ବୃକ୍ଷ ବଡ ପ୍ରୟୋଜନ ହୁଅଇ ?

ଗୁରୁ । ନଡ଼ିଆ, ବାଉଁଶ, କଦଳୀ, ଇତ୍ୟାଦି ବୃକ୍ଷରେ ସର୍ବଦା ଲୋକର ପ୍ରୟୋଜନ । ଦେଖ; ନଡ଼ିଆର ପତ୍ରଗିରେ ପଅଁର ହୁଅଇ ପୁଣି ଫଳର କତାରେ ମେଜ ଇତ୍ୟାଦି ମାର୍ଜନା ହୁଅଇ ପୁଣି ଦଉଡି ଓ କାଛୁ ଜନ୍ମଇ ପୁଣି ଫଳର ଜଳ ଖାଇବାକୁ ଓ ଶସ୍ୟ ଭୋଜନ କରିବାକୁ ଅତି ଉତ୍ତମ ପୁଣି ସେ ଶସ୍ୟରୁ ତୈଲ ଜନ୍ମଇ ତହିଁ-ଉତ୍ତାରୁ ଆଉ୨ କର୍ମରେଇ ଲାଗଇ । ଆଉ ବାଉଁଶରେ ଗୃହ ପ୍ରସ୍ତୁତ ହୁଅଇ ଓ ଚଉଲଧୁଆ କୁଲା ଇତ୍ୟାଦି ଗୃହର ନାନା ଉପକରଣ ହୁଅଇ ଓ ନାନା ଯନ୍ତ୍ର ନିର୍ମାଣ ହୁଅଇ । ଆଉ କଦଳୀର ପତ୍ରରେ ବାଳକମାନେ ପାଠଶାଳାରେ ଲେଖନ୍ତି ପୁଣି ଭୋଜନ ପାଏ ଅଭା-ବରେ ତାହାର ପତ୍ରରେ ଲୋକମାନେ ଭୋଜନ କରନ୍ତି ଓ ତାହାର ମଞ୍ଜାରେ ବ୍ୟଞ୍ଜନ ପ୍ରସ୍ତୁତ ହୁଅଇ ପୁଣି ପ୍ରାୟ ସର୍ବଦେଶୀୟ ଲୋକ-ମାନେ ତାହାର ଫଳକୁ ଭଲ ଜାଣି ଭୋଜନ କରନ୍ତି ।

ଶିଷ୍ୟ । କି ପ୍ରକାରେ ବୃକ୍ଷର ଫଳ ଜନ୍ମଇ ?

ଗୁରୁ । ଯେଉଁ ସ୍ଥାନରୁ ପୁଷ୍ପ ହୁଅଇ ସେହି ସ୍ଥାନରୁଇ ପ୍ରାୟ ସମସ୍ତ ବୃକ୍ଷର ଫଳ ଉତ୍ପନ୍ନ ହୁଅଇ କେବଳ ମକା ବୃକ୍ଷର ନୁହଇ ପୁଣି ତାହାର ଯେ ସ୍ଥାନରେ ପୁଷ୍ପ ନୁହଇ ସେହି ସ୍ଥାନରେଇ ଫଳ ହୁଅଇ । ତାହାଂ ଛଡା ପ୍ରାୟ ସମସ୍ତ ବୃକ୍ଷରଇ ପୁଷ୍ପରୁ ଫଳ ହୁଅଇ ପୁଣି ଅଶ୍ୱଥ, ବଟ, ଇତ୍ୟାଦି ବୃକ୍ଷର ପୁଷ୍ପ ନାହିଁ ପୁଣି ତରଭୁଜ, କାକୁଡି, ଇତ୍ୟାଦିର ପୁଷ୍ପ ନ ଜନ୍ମୁ ଆଗେ ଫଳ ଦେଖା ଯାଏ ।

ଶିଷ୍ୟ । ଫଳ କିରୂପରେ ରକ୍ଷିତ ହୁଅଇ ?

ଗୁରୁ । ଯେଉଁପାରେ ଫଳ ସମସ୍ତ ରକ୍ଷା ପାଏ । ପୁଣି ସମସ୍ତ

ଫଳରେ ସମାନରୂପ ଚୋପା ନୁହଇ । ଦେଖ, ତରବୁଜ, କାକୁଡ, ଇତ୍ୟାଦି ଫଳର ଚୋପା ମୋଟ ହୁଅଇ ପୁଣି ଅଉ୨ ଫଳର ଚୋପା ପାତଳ ହୁଅଇ । ଯେ ସମସ୍ତ ଫଳ ଫଳି ଭୂମିରେ ପଡ ଥାଏ ସେମାନଙ୍କର ଚୋପା ଯେବେ ମୋଟ ନୁହନ୍ତା ତେବେ କୀଟରେ ନଷ୍ଟ ହୁଅନ୍ତା ପୁଣି ଯେବେ ଦ୍ରାକ୍ଷାଫଳର ଚୋପା ତରବୁଜର ଚୋପାର ନ୍ୟାୟ ମୋଟ ହୁଅନ୍ତା ତେବେ ଚୁପୁଡିବାର ଓ ଚୋଚ-ମିବାର ଯୋଗ୍ୟ ନୁହନ୍ତା ।

ଶିଷ୍ୟ । ଫଳର କେଉଁ ସ୍ଥାନରେ ବୀଜ ଥାଏ ?

ଗୁରୁ । ବୃକ୍ଷ ଉତ୍ପତ୍ତିର ନିମନ୍ତେ ବୀଜର ବଡ ପ୍ରୟୋଜନ ଏହି ନିମନ୍ତେ ଫଳର ମଧ୍ୟରେ ଯୋଗ୍ୟ ସ୍ଥାନରେଇ ବୀଜ ଥାଏ ପୁଣି କୌଣସି୨ ଫଳର ମଧ୍ୟରେ ନିବୀଡ ସ୍ଥାନରେ ଓ କୌଣସି ଫଳର ଚୋପାର ଭିତରେ ବୀଜ ଥାଏ ।

ଶିଷ୍ୟ । ଭଲ ଅବଧାନ, ମନୁଷ୍ୟମାନେ ବୀଜ ରୋପଣ କରିବାକୁ ଓ ଗଛ ରକ୍ଷା କରିବାକୁ ଯତ୍ନ ନ କଲେହେଁ ଅନେକ୨ ବୃକ୍ଷ ଲତାଦି ଉତ୍ପନ୍ନ ହୋଇ ନଷ୍ଟ ନୁହଇ ଏ ବଡ ଆଶ୍ଚର୍ଯ୍ୟ ।

ଗୁରୁ । ମନୁଷ୍ୟର ଚେଷ୍ଟା ବିନୁହିଁ ଯେ ଅନେକ୨ ବୀଜ ରୋପିତ ହେଉଅଛି ଏଥିରେ ଈଶ୍ୱରର ବଡ ନିପୁଣତା ପ୍ରକାଶ । ଦେଖ, କେତେ୨ ବୀଜ ନଦୀନଦୀର ସ୍ରୋତରେ ଭାସି ପୁଣି କେତେ୨ ବୀଜ ବତାସରେ ଉଡ଼ି ଯାଇ ସ୍ୱବୃକ୍ଷରୁ ଅତି ଦୂରରେ ରୋପିତ ହୁଅନ୍ତି । ପୁଣି ଗୁଣ୍ଡିଚିମୂଷା, ପକ୍ଷୀ, ଇତ୍ୟାଦି ଅନେକ୨ ବୀଜ ଭୋଜନ କଲେହେଁ ତାହା ନଷ୍ଟ ନୋହି ପୁଣି ସେମାନଙ୍କର ବିଷ୍ଠାର ସଙ୍ଗେ ଯେ ସ୍ଥାନରେ ପଡଇ ସେହି ସ୍ଥାନେଇ ରୋପିତ ହୋଇ ବୃଦ୍ଧି ପାଏ ପୁଣି ଛୁଚୁନ୍ଦ୍ରା, ପିମ୍ପୁଡି, କୃମୀ, ଇତ୍ୟାଦି ଯେ ଭୂମିରେ ଗାତ କରନ୍ତି ସେହି ସ୍ଥଳରେ ଯେବେ ବାୟୁ ଯୋଗରେ କୌଣସି୨ ବୀଜ ଉଡି ପଡଇ ତେବେ ସେଠାରେଇ ରୋପିତ ହୋଇ ବୃଦ୍ଧି ପାଏ ।

ଶିଷ୍ୟ । ଭଲ ଅବଧାନ, ପକ୍ୱ ଫଳ କିପ୍ରକାରେ ଚିହ୍ନା ଯାଏ ?

ଗୁରୁ । ଫଳର ବିଶେଷ ବର୍ଣ୍ଣ ଓ ଡେମ୍ଫର ମ୍ଳାନତା ପୁଣି ଅଳ୍ପ ସ୍ପର୍ଶରେ ବୃକ୍ଷରୁ ପତନ ଇତ୍ୟାଦି ଲକ୍ଷଣରେ ଫଳର ପକ୍ୱତା ନିର୍ଣ୍ଣୟ ହୁଅଇ । ଏବେ ଯେବେ ତାହା ଦେଖିବାକୁ ବାଞ୍ଛା କର ତେବେ ଚାଲ ଅମ୍ଭେମାନେ ବଗିଚାରେ ଯାଇ । ତହିଁରେ କେମନ୍ତ ସୁନ୍ଦର କେମନ୍ତ ଆଶ୍ଚର୍ଯ୍ୟ ନାନା ବର୍ଣ୍ଣ ପୁଣି ନୟନର କେମନ୍ତ ଆନନ୍ଦଜନକ ପୁଣି ଘ୍ରାଣର କେମନ୍ତ ତୃପ୍ତିଜନକ ପୁଷ୍ପାଦି ଅଛି ତାହା ସେ ଫୁଲ ବଗିଚାରେ ଦେଖିବାରେ ଜାଣିବ ।

ଶିଷ୍ୟ । ଭଲ ଅବଧାନ, ପୁଷ୍ପର କେଉଂ ୨ ଅବୟବ ବିବେଚନାର ଯୋଗ୍ୟ ହୁଅଇ ଏହା ଅମ୍ଭେ ପଚାରିବାକୁ ବାଞ୍ଛା କରୁ ।

ଗୁରୁ । ପୁଷ୍ପର ପ୍ରସବ ବନ୍ଧନ, ପତ୍ର, ପାଖୁଡ଼ା, ଗର୍ଭପାଖୁଡ଼ା, ବୀଜ, ବୀଜକୋଷ; କୋଷାଧାର, ଏହି ସପ୍ତ ଅବୟବ ବିବେଚନାର ଯୋଗ୍ୟ ଅଟଇ ।

ଶିଷ୍ୟ । ପୁଷ୍ପ ମାତ୍ରର କି ପ୍ରସବ ବନ୍ଧନ ଅଛି ?

ଗୁରୁ । ସମସ୍ତ ପୁଷ୍ପର ନାହିଁ ପୁଣି ଅନେକ ପୁଷ୍ପରେ ପ୍ରସବ ବନ୍ଧନ ଥାଏ । ବିଶେଷରେ କୌଣସି ୨ ପୁଷ୍ପରେ ବୀଜ ପାକ ପର୍ଯ୍ୟନ୍ତ ଥାଏ, କେତେକ ପୁଷ୍ପର ଅବା ପ୍ରଫୁଲ୍ଲତାର ପୂର୍ବରେ ଖସି ପଡ଼ଇ. କେତେ ପୁଷ୍ପରେ ପ୍ରସବ ବନ୍ଧନ ନୁହଇ ଯଥା, ରଜନୀ, ଗନ୍ଧାଦି ।

ଶିଷ୍ୟ । ଅବଧାନ, ପୁଷ୍ପର ଦଳ କାହାକୁ ବୋଲନ୍ତି ?

ଗୁରୁ । ଯାହା ସମୁଦାୟରେ ପୁଷ୍ପ ହୁଅଇ ସେହି ପ୍ରତ୍ୟେକ ପାଖୁଡ଼ାକୁ ଦଳ ବୋଲି ଯାଏ ।

ଶିଷ୍ୟ । କେଶର କାହାକୁ ବୋଲନ୍ତି ?

ଗୁରୁ । ଦଳର ମଧ୍ୟସ୍ଥାନରେ ଚାରିଆଡେ ଯହିଁରେ ପୁଷ୍ପ ରେଣୁ ଥାଏ ଏମନ୍ତ ଯେ ସୂତ୍ରର ପ୍ରାୟେ ବସ୍ତୁ ତାହାକୁ କେଶର ବୋଲି ।

ଶିଷ୍ୟ । ଗର୍ଭକେଶର କାହାକୁ ବୋଲି ?

ଗୁରୁ । ପୁଷ୍ପର ମୂଳଠାରୁ ଯାହା କେଶରର ମଧ୍ୟଭାଗରେ ଥାଏ ସେହି ଗର୍ଭକେଶର ଜାଣିବ ।

ଶିଷ୍ୟ । ଗର୍ଭକେଶର କି ସମସ୍ତ ପୁଷ୍ପର ମଧ୍ୟଭାଗରେ ଥାଏ ?

ଗୁରୁ । ହଁ, ପ୍ରାୟଇ ଥାଏ । ତେବେ କୌଣସି୨ ସମୟରେ କୌଣସି ପୁଷ୍ପରେ କେଶର ଥାଏ ଓ କୌଣସି୨ ସମୟରେ କୌଣସି ପୁଷ୍ପରେ ଅବା ଗର୍ଭକେଶର ଥାଏ ପୁଣି ବାୟୁ କି କୀଟ କି ପକ୍ଷୀ କି ଆଉ କାହିଁରେ ଅନ୍ୟ କେଶରରୁ ପୁଷ୍ପରେଣୁ ଉଡ଼ି ଗର୍ଭକେଶରରେ ନ ଲାଗିଲେ ସେ ପୁଷ୍ପରୁ ଫଳ ନୁହଇ ।

ଶିଷ୍ୟ । କେଶର ଓ ଗର୍ଭକେଶର ବିଷୟରେ ଆଉ କିଛି କଥା ଅଛି କି ନାହିଁ ?

ଗୁରୁ । ହଁ, ଅଛି । କେଶରର ଦୁଇ ଭାଗ ଏକ ମୃଣାଳୀ, ଅନ୍ୟ ପରାଗ । ପୁଣି ଗର୍ଭକେଶରର ତିନ ଭାଗ ପ୍ରଥମ ଉପରଭାଗ ଯାହାକୁ ମଣୀ ବୋଲି, ଦ୍ୱିତୀୟ ସେ ମଣୀର ତଳେ ବୀଜକୋଶ ପର୍ଯ୍ୟନ୍ତ ଏକ ମୃଣାଳୀ, ତୃତୀୟ ବୀଜାଧାର ମଞ୍ଜୁଷା ଥାଏ ।

ଶିଷ୍ୟ । ଏମାନଙ୍କରଠାରୁ କି ପ୍ରକାରେ ବୀଜ ଜନ୍ମଇ ?

ଗୁରୁ । ଯେ ସମୟରେ ପୁଷ୍ପ ଫୁଟଇ ସେ କାଳରେ କେଶର ସମସ୍ତ ଫାଟି ଯାଏ ତହିଁରେ ଗର୍ଭକେଶରରେ ତାହାର ପରାଗ ପଡ଼ିଲେ ତହିଁରୁ ବୀଜ ଜନ୍ମଇ ।

ଶିଷ୍ୟ । ବୀଜକୋଷ ଓ କୋଷାଧାର କାହାକୁ ବୋଲଇ ?

ଗୁରୁ । ଯେ ସ୍ଥଳରେ ବୀଜ ଥାଏ ତାହାକୁ ବୀଜକୋଷ ବୋଲି । ପୁଣି ପୁଷ୍ପର ସଙ୍ଗେ ସେ ବୀଜକୋଷ ଯହିଁରେ ଥାଏ ତାହାକୁ କୋଷାଧାର ବୋଲି ।

ଶିଷ୍ୟ । ଭଲ ଅବଧାନ, ପୁଷ୍ପର କି୨ ଗୁଣ ଆମ୍ଭମାନଙ୍କର ବିବେଚନାର ଯୋଗ୍ୟ ଅଛି ତାହା ପଢ଼ିବାକୁ ଇଚ୍ଛା କରୁ ।

ଗୁରୁ । ସୁନ୍ଦର ବର୍ଣ୍ଣରେ, ଆକାର ବିଶେଷରେ, ସୌରଭ-

ରେ ପୁଷ୍ପ ଅତି ଆବଶ୍ୟକ ତାହା କେବଳ ଭୂଷଣର ନିମନ୍ତେ ଏମନ୍ତ ନୋହେ କୌଣସି୨ ପୁଷ୍ପ ଅତି ପ୍ରୟୋଜନ ଅଟଇ । ଆଉ ଏମନ୍ତ ଶ୍ୟାମବର୍ଣ୍ଣ ବୃକ୍ଷରୁ ଏତେ ସୌରଭଯୁକ୍ତ ପୁଷ୍ପ ଜନ୍ମଇ ପୁଣି ଏମନ୍ତ କଦର୍ଯ୍ୟ ମୂଳରୁ ଏତେ ବଚିତ୍ର ପୁଷ୍ପ ଜନ୍ମଇ ଏଥିରେ ବଡ ଆଶ୍ଚର୍ଯ୍ୟ ବୋଧ ହୁଅଇ ।

ଶିଷ୍ୟ । ପୁଷ୍ପର ଅଘ୍ରାଣ ବିଷୟରେ ଆପଣ କି କହନ୍ତି?

ଗୁରୁ । ପୁଷ୍ପର ମଧ୍ୟରେ ବାସମୟ ରସ ଅଛି ସେହି ରସ କ୍ଷୁଦ୍ର୨ ପୁଷ୍ପରନ୍ଧ୍ର ଓ ପତ୍ରରୁ ବାହାର ହୁଅଇ ତହିଁରେ ଉତ୍ପନ୍ନ ଯେ ସୌରଭ ତାହା ଅମ୍ଭେମାନେ ଅଘ୍ରାଣ କରୁ ।

ଶିଷ୍ୟ । ପୂର୍ବରେ ଅବଧାନ କହିଲେ ଯେ ପୁଷ୍ପ କେବଳ ଭୂଷ-ଣାର୍ଥରେ ନୋହେ ଅନ୍ୟ୨ ପ୍ରୟୋଜନର ନିମନ୍ତେହେଁ ଅଟଇ ।

ଗୁରୁ । ହଁ, ଯେ ସମୟରେ ଅମ୍ଭମାନଙ୍କର ମନ ଉତ୍କଣ୍ଠିତ ଓ ତାପିତ ହୁଅଇ ସେ କାଳରେ ପୁଷ୍ପଗଣ ମନଃସ୍ଥିର ଓ ତୃପ୍ତ କରନ୍ତି । ତାହା ଛଡା ପୁଷ୍ପରୁ ଅମ୍ଭେମାନେ ଫଳ, ବୀଜ ବିଶେଷରେ ମଧୁ, ତୈଳ ବିଶେଷ, ମହମ, ନସ୍ୟ, ରଙ୍ଗ, ଔଷଧ, ଇତ୍ୟାଦି ପାଉଅଛୁଁ ।

ଶିଷ୍ୟ । ମାତ୍ର କେତେ ପୁଷ୍ପର ଦୁର୍ଗନ୍ଧ ଅଛି ।

ଗୁରୁ । ଯେ୨ ପୁଷ୍ପର ଘ୍ରାଣ ମନ୍ଦ ସେମାନେ ଦୁଷ୍ଟ ବାଷ୍ପ ଗ୍ରହଣ କରନ୍ତି କିବା ନାଶ କରନ୍ତି ଓ ପଶୁ ପତଙ୍ଗର ଭକ୍ଷ୍ୟ ହୁଅନ୍ତି ପୁଣି ଔଷ-ଧର ଗୁଣ ଧାରଣ କରନ୍ତି । ବୃକ୍ଷ ଓ ପୁଷ୍ପରୁ ଯେ କେତେ ପ୍ରୟୋ-ଜନ ତାହା ଅମ୍ଭେମାନେ ଅଦ୍ୟାପି ସମସ୍ତ ବୁଝିବାକୁ ପାରୁ ନାହୁଁ ।

ଶିଷ୍ୟ । ପୁଷ୍ପର ବିଷୟରେ କି ଆଉ କୌଣସି କଥା ନାହିଁ?

ଗୁରୁ । ହଁ, ଆଉ ଏକ କଥା ଅଛି ତାହା ତୁମ୍ଭମାନଙ୍କର ମନୋ-ଯୋଗର ବିଷୟ ଅଟଇ । ତହିଁରେ ଅମ୍ଭେମାନେ ଈଶ୍ୱରର ନିପୁ-ଣତା ଜାଣୁଅଛୁଁ ଓ ଆମ୍ଭମାନଙ୍କର ଜୀବନ ବିଷୟରେ ଦୁର୍ଭାବନା ନିଷ୍ପ୍ରୟୋଜନ ହେଉଅଛି । ଦେଖ, କ୍ଷେତ୍ରର କାନୁଡା ପୁଷ୍ପ କେମନ୍ତ

ବଢ଼ୁଅଛନ୍ତି । ସେ ସମସ୍ତ ସୂତା ନ କାଟନ୍ତି, କୌଣସି ପରିଶ୍ରମ ନ କରନ୍ତି ତଥାପି କୌଣସି ବଡ ରାଜା ଆପଣାର ସମସ୍ତ ଐଶ୍ୱର୍ଯ୍ୟରେ ତାହାର ତୁଲ୍ୟ ବିଭୂଷିତ ହେବାକୁ ନ ପାରଇ ଏନିମନ୍ତେ ଏହି ଅଳ୍ପ ଦିନସ୍ଥାୟି ପୁଷ୍ପକୁ ଯେବେ ପରମେଶ୍ୱର ଏହିରୂପ ଭୂଷଣ ଦେଇ ଅଛନ୍ତି ତେବେ ଅମ୍ଭମାନଙ୍କୁ କି ଖାଦ୍ୟ ଓ ପରିଧାନ ବସ୍ତ୍ର ନ ଦେବେ ?

ଶିଷ୍ୟ । ପୁଷ୍ପ ଓ ବୃକ୍ଷ କି ପ୍ରକାରେ ରକ୍ଷା ଓ ବୃଦ୍ଧି ପାଏ ?

ଗୁରୁ । ପ୍ରତ୍ୟେକ ବୃକ୍ଷରେ ବହୁତର ବୀଜ ଜନ୍ମଇ ତହିଁରୁ କାଳେ୨ ସେହି୨ ବୃକ୍ଷ ରକ୍ଷିତ ହୁଅଇ କୌଣସି୨ ବୀଜ ଏମନ୍ତ କ୍ଷୁଦ୍ର ଅଛି ଯେ ପ୍ରାୟ ଦେଖା ନ ଯାଏ ।

ଶିଷ୍ୟ । ଏହି ବୀଜ ପୁଷ୍ପର କେଉଁ ସ୍ଥାନରେ ଥାଏ ?

ଗୁରୁ । କୌଣସି୨ ବୃକ୍ଷର ପୁଷ୍ପ ଅଗରେ ବୀଜ ଥାଏ ପୁଣି କୌଣସି୨ ବୃକ୍ଷର ପୁଷ୍ପ ମଧ୍ୟରେ ଓ କାହାର୨ ପତ୍ର ମଧ୍ୟରେ ପୁଣି କାହାର୨ ପତ୍ରର ତଳେ ବୀଜ ଥାଏ । ପୁଣି କେତେକର ଗୋ-ଟାର ମଧ୍ୟରେ ଖୋଲପାରେ ଭିନ୍ନ୨ ହୋଇ ବୀଜ ଥାଏ । ପୁଣି ସୂର୍ଯ୍ୟମୁଖି ଇତ୍ୟାଦିର ଯେମନ୍ତ ସେରୂପ କୌଣସି୨ ବୃକ୍ଷର ସମସ୍ତ ବୀଜ ଏକତ୍ର ହୋଇ ଥାଏ । ପୁଣି ଏହି କ୍ଷୁଦ୍ର୨ ବୀଜରୁ ଯେ ବଡ଼୨ ବୃକ୍ଷ ଜନ୍ମଇ ଏହା କି ବଡ ଆଶ୍ଚର୍ଯ୍ୟ ନୋହେ ?

ଶିଷ୍ୟ । ହଁା, ଆଶ୍ଚର୍ଯ୍ୟ ପ୍ରମାଣ । ଭଲା ଅବଧାନ, ବରଷର ମଧ୍ୟ-ରେ ଏକ୨ ବୃକ୍ଷରୁ କି ଅନେକ୨ ବୀଜ ନ ଜନ୍ମଇ ?

ଗୁରୁ । ବୃକ୍ଷ ବିଶେଷରେ ବୀଜର ବିଶେଷ ସଂଖ୍ୟା ହୁଅଇ । ଦେଖ, ଏକ ତମାଖୁ ଗଛରେ କୌଣସି୨ ସମୟରେ ଚାଳିଶ ହଜାର ବୀଜର ସଂଖ୍ୟା କରା ଯାଇଅଛି । ପୁଣି ଏକ ଜଣା ବୃକ୍ଷରୁ ବର-ଷର ମଧ୍ୟରେ ତିନ ଲକ୍ଷ ବୀଜ ପାଇବାକୁ ପାରି ।

ଶିଷ୍ୟ । ଏହି ବୀଜର ଏମନ୍ତ ଅସମ୍ଭବ ସଂଖ୍ୟା ହୁଅଇ କିପାଁ ?

ଗୁରୁ । ଅନେକ ବୀଜ ପକ୍ଷିଗଣରେ ଭକ୍ଷିତ ହୁଅଇ । ଏନିମନ୍ତେ କଜାଣି ସମସ୍ତ ବୀଜଇ ଯେବେ ଭକ୍ଷଣରେ ଏକ କାଳରେ ବିନାଶ ହୁଅଇ ପୁଣି ତାହା ହେବାକୁ ପାରଇ ତେବେ ଅଧିକ ସଂଖ୍ୟକ ବୀଜ ନୋହିଲେ କି ପ୍ରକାରେ ପୁନର୍ବାର ବୀଜ ପାଇବାକୁ ପାରନ୍ତ ? ଏଥିରେ ଈଶ୍ୱରର ପରାକ୍ରମ, ନିପୁଣତା, ଅନୁଗ୍ରହ ବୋଧ କରିବାକୁ ହୁଅଇ । ଦେଖ, ଏପ୍ରକାର ବୀଜରୂପ ଭକ୍ଷ୍ୟ ନ ଥିଲେ ଏହି ସମସ୍ତ ପକ୍ଷିର ମଧ୍ୟରେ ପ୍ରାପ୍ତ ଅର୍ଦ୍ଧଭାଗଇ ନ ବଞ୍ଚନ୍ତେ । ଏହି ଯେ କଣିକା ଆକାର ଭକ୍ଷ୍ୟ ତାହା ଶୀତକାଳର ନିମନ୍ତେ ଅନାୟାସରେ ସଞ୍ଚିତ ହୁଅଇ ।

ଶିଷ୍ୟ । ଖେ୍ରପାରୁ କି ପ୍ରକାରେ ବୀଜ ବାହାରଇ ?

ଗୁରୁ । ଖରା ସମୟରେ ସେ ଖେ୍ରପା ଶୁଷ୍କ ହୋଇ ଫାଟିଲା ଉତ୍ତାରେ ତହିଁରୁ ବୀଜ ବାହାର ହୋଇ ଭୂମିରେ ପଡଇ । ତହିଁରେ ଯେବେ ସେ ବୀଜ କାହାର ଦ୍ୱାରା ନଷ୍ଟ ନ ଯାଏ ତେବେ ବୃଷ୍ଟିରେ ସେ ବୀଜ ମୃତ୍ତିକା ମଧ୍ୟରେ ପୋତି ପଡଇ ।

ଶିଷ୍ୟ । ଯେଉଁ ବୀଜ ଅତି ହାଲୁକା ସେ ସବୁ କେଉଁଠାରେ ଯାଏ ?

ଗୁରୁ । ଆମ୍ଭେମାନେ ଦେଖୁଥାଇ ସେ ସମସ୍ତ ବାୟୁରେ ଉପରକୁ ଉଠି ବାୟୁ ରହିତ ସମୟରେ ଆଉ ଥରେ ତଳେ ପଡଇ । ଏହି ପ୍ରକାରେ ଉଚ୍ଚ ପାଚେରିରେ ଓ କୋଠା ଉପରେହେଁ ବୃକ୍ଷ ଉତ୍ପନ୍ନ ହୁଅଇ । ତହିଁରେ ଇଟା ଓ ପଥରର ସନ୍ଧିସ୍ଥାନରେ ବୀଜ ପଡିଲେ ବୃକ୍ଷ ହୋଇ କ୍ରମଶେ ବୃଦ୍ଧି ପାଏ । ପୁଣି ପକ୍ଷିଗଣ ଥଣ୍ଟରେ ବୀଜ ନେଇ ଯିବାର ସମୟରେ କୌଣସି୨ ବୀଜ ପଡଇ । ତାହା ଛଡା କୌଣସି୨ ବୀଜର ଉପରରେ ଏକ ପ୍ରକାର ତୁଳା ଥାଏ ଏକାରଣ ତୁଳାର ଯୋଗୁଁ ବାୟୁବଳେ ସେ ବୀଜ ନାନା ସ୍ଥାନରେ ଉଡି ପଡଇ ।

ଶିଷ୍ୟ । କେତେ ଦିନ ପର୍ଯ୍ୟନ୍ତେ ସେ ବୀଜ ଅଙ୍କୁର ଜନ୍ମିବା ଯୋଗ୍ୟ ଥାଏ ?

ଗୁରୁ । ଦୁଇ ତିନ ବରଷ ପର୍ଯ୍ୟନ୍ତେ ବୀଜ ସତେଜ ଥାଏ । ଅତି ବୃଷ୍ଟି ସକାଶେ ଯେ ବରଷରେ ବୀଜ ସଂଗ୍ରହ ନୁହଇ ସେହି ବରଷ-ରେ ପୁରାତନ ବୀଜ ବୁଣଇ ।

ଶିଷ୍ୟ । କେଉଁଠାରୁ ବୀଜରୁ ଅଙ୍କୁର ଜନ୍ମଇ ?

ଗୁରୁ । ଭୂମି ଓ ତାପରେ ବୀଜ ମଧ୍ୟରେ ଯେଉଁ ଅଙ୍କୁର ଅଛି ତାହାର ଜନ୍ମ ପୁଣି ରକ୍ଷାର ହେତୁ ହୁଅଇ । ସେ ଅଙ୍କୁରର ଶକ୍ତି ଆରମ୍ଭ ହେଲେ ଅପଣା ଚୋପା ଫାଟି ମଞ୍ଜି ଆପଣାର ମୂଳ ବଢାଏ ପୁଣି କିଛି ବଳ ପାଇଲେ ଅଙ୍କୁର ବାହାର କରଇ । ଏମନ୍ତ କ୍ରମେ୨ ବଢି ସ୍ୱଭାବିକ ବୃକ୍ଷ ହୁଏ ।

ଶିଷ୍ୟ । ଏହି କହିଲାର ପ୍ରୟୋଜନ ବିନୁ ବୀଜରୁ କି ଆଉ କୌ-ଣସି ଉପକାର ଅଛି ?

ଗୁରୁ । ହାଁ, କେତେ୨ ବୀଜ ମନୁଷ୍ୟ, ପଶୁ, ପକ୍ଷିଗଣର ଖାଦ୍ୟ ହୁଅଇ । ପୁଣି କୌଣସି୨ ବୀଜରୁ ଚିତ୍ରକର୍ମ, ମଖା, ଦୀପଜାଳିବାର, ଭକ୍ଷଣ, ଇତ୍ୟାଦିର ନିମନ୍ତେ ତେଲ ଉତ୍ପନ୍ନ ହୁଅଇ । ପୁଣି କେତେକ ବୀଜରୁ ଔଷଧ ପ୍ରସ୍ତୁତ ହୁଅଇ । ଏନିମନ୍ତେ କ୍ଷୁଦ୍ର ବସ୍ତୁକୁ ତୁଚ୍ଛଜ୍ଞାନ କରିବାର ଆମ୍ଭମାନଙ୍କର ଅଣୁଚିତ ଏହା ଜ୍ଞାନ କରିବାକୁ ହୁଅଇ ଯେହେତୁ ଏଥିରେ ଆମ୍ଭମାନଙ୍କର ପରମୋପକାର ଜନ୍ମଇ ।

---

ତୃଣ, ଶସ୍ୟାଦି ବିଷୟରେ ।

ଶିଷ୍ୟ । ଭଲ ଅବଧାନ, ପୃଥିବୀଜାତ ବସ୍ତୁର ମଧ୍ୟରେ କେଉଁ ବସ୍ତୁରେ କୃତ ପ୍ରୟୋଜନ ?

ଗୁରୁ । ଧାନ୍ୟ, ଗହମ, ଘାସ, ଇତ୍ୟାଦି । ପୁଣି ପରମେଶ୍ୱର

ମନୁଷ୍ୟଗଣର ପୋଷଣାର୍ଥେ ଧାନ୍ୟାଦିର ଓ ପଶୁଗଣର ପୋଷଣାର୍ଥେ ଘାସ ସୃଷ୍ଟି କରିଅଛନ୍ତି ।

ଶିଷ୍ୟ । ଘାସର ମଧ୍ୟରେ ବିବେଚନାର ଯୋଗ୍ୟ କି ଅଛି ?

ଗୁରୁ । ତହିଁରେ ଏହି ବିବେଚନାର ଯୋଗ୍ୟ ଅଛି ମନୁଷ୍ୟମାନଙ୍କର ଅପ୍ରାସ ବିନୁ ପଶୁଗଣର ଭକ୍ଷ୍ୟ ଘାସ ପ୍ରସ୍ତୁତ ହୋଇଅଛି । ପୁଣି ଘାସରେ ବଡିକ ସୁଦୃଶ୍ୟ ଦୁଲୁଖର ପ୍ରାଯ୍ୟେ ପୃଥିବୀର ମୁଖ ତମ୍ପା ଅଛି ।

ଶିଷ୍ୟ । ଭଲା ଅବଧାନ, ଘାସର ଅଭାବ ସମୟରେ କାଅବା ହିମ ଦେଶରେ ପଶୁଗଣ କି୨ ଭୋଜନ କରନ୍ତି ?

ଗୁରୁ । କେତେକ ଦେଶରେ ଘାସ ଶୁଷ୍କ କରି ରଖା ଯାଏ ପୁଣି ତାହାର ଅଭାବ ସମୟରେ ସେହି ଘାସ ପଶୁଗଣ ଭୋଜନ କରନ୍ତି । କୌଣସି୨ ବରଷରେ ଦୁଇ ତନଥର ଘାସ କାଟି ସଞ୍ଚୟ କରନ୍ତି ଯେବେ ତାହା ନ କରନ୍ତି ତେବେ ପତ୍ରସ୍ରାର ମଧ୍ୟରେ ଥାଇ ପଶୁଗଣର ଖାଦ୍ୟ ହୁଅଇ ।

ଶିଷ୍ୟ । ସମସ୍ତ ଘାସ କି ଏକ ପ୍ରକାର ?

ଗୁରୁ । ନା, ଏତେ ପ୍ରକାର ଘାସ ଅଛି ଯେ ମନୁଷ୍ୟ ଆଜନ୍ମ ମୃତ୍ୟୁକାଲ ପର୍ଯ୍ୟନ୍ତହିଁ ସମସ୍ତ ଜାଣିବାକୁ ନ ପାରନ୍ତି ।

ଶିଷ୍ୟ । ଶସ୍ୟଗଣର ମଧ୍ୟରେ ପ୍ରଧାନ କି ?

ଗୁରୁ । ଧାନ, ଗହମ, ଯବ, ଇତ୍ୟାଦି ।

ଶିଷ୍ୟ । ଶସ୍ୟର ମଧ୍ୟରେ କେଉଁ୨ ଶସ୍ୟ ଲୋକମାନେ ଅଧିକ ଭୋଜନ କରନ୍ତି ?

ଗୁରୁ । ଧାନର ଚାଉଳ, ଯେଣୁ ପୃଥିବୀର ଲୋକ ତନି ଭାଗ କଲେ ଦୁଇ ଭାଗ ତହିଁରେ ପ୍ରାଣଧାରଣ କରନ୍ତି ।

ଶିଷ୍ୟ । ଚାଉଳ କେତେ ପ୍ରକାର ଅଛି ?

ଗୁରୁ । ଉଷୁନା, ଅରୁଆ ଏହି ଦୁଇ ପ୍ରକାର ହୁଅଇ । ଅର୍ଥାତ

ଧାନ ଅଗ୍ନିରେ ସିଝାଇଲେ ଯେଉଂ ଚାଉଳ ହୁଅଇ ତାହାକୁ ଉସୁନା ଚାଉଳ ବୋଲନ୍ତି । ପୁଣି କେବଳ ଖରାରେ ଶୁଷ୍କ କରି ଯେଉଂ ଚାଉଳ ହୁଅଇ ତାହାକୁ ଅରୁଆ ଚାଉଳ ବୋଲନ୍ତି । ତହିଁର ମଧ୍ୟରେ ଅନେକ ପ୍ରଭେଦ ଅଛି ।

ଶିଷ୍ୟ । ଏହି ଶସ୍ୟର ଏତେ ନାମ ହେଲା କପାଁଇ ?

ଗୁରୁ । ଅବସ୍ଥା ବିଶେଷରେ ନାମ ବିଶେଷ ହୋଇଅଛି । ଯେଂବେ ତୁଷର ସଙ୍ଗେ ଥାଏ ତେବେ ତାହାକୁ ଧାନ ବୋଲନ୍ତି । ପୁଣି ନିସ୍ତୁଷ ହେଲେ ଚାଉଳ ବୋଲନ୍ତି । ତହିଁଉତ୍ତାରେ ଭକ୍ଷଣ ନିମନ୍ତେ ସେହି ଚାଉଳ ସିଝିଲେ ଅନ୍ନ କିଅବା ଭାତ ନାମରେ ପ୍ରସିଦ୍ଧ ହୁଅଇ ।

ଶିଷ୍ୟ । ବରଷର ମଧ୍ୟରେ କେଉଂ୨ ସମୟରେ ଧାନ ବୁଣା ଯାଏ ପୁଣି କେଉଂ୨ ସମୟରେ ବା କଟା ଯାଏ ?

ଗୁରୁ । କେତେ ଧାନ ବୈଶାଖ ମାସରେ ବୁଣି ଥାନ୍ତି ତାହା ଭାଦ୍ରବ ମାସରେ ପ୍ରସ୍ତୁତ ହୁଅଇ । ପୁଣି କୌଣସି୨ ଧାନ ଅଷାଢ ମାସରେ ବୁଣିଲେ ପୁଷ ମାସରେ କଟା ଯାଯେ ।

ଶିଷ୍ୟ । ଏହି ସମସ୍ତ ଧାନ କ୍ଷେତ୍ରରେ ଥାଇ କାହିଁରେ ଶୀଘ୍ର ବଢଇ ?

ଗୁରୁ । ବୃଷ୍ଟିରେ ଶୀଘ୍ର୨ ବଢି ଉଠଇ ।

ଶିଷ୍ୟ । ଉତ୍ତମ ଅବଧାନ, ଏଦେଶରେ ଏହା ବିନୁ ମନୁଷ୍ୟମାନଙ୍କର ବଡ ପ୍ରୟୋଜନ ଅଉ କେଉଂ ଶସ୍ୟ ଅଛି କି ନାହିଁ ?

ଗୁରୁ । ବୁଟ, ବ୍ରୀହି, ଇତ୍ୟାଦି ରବି ଜନ୍ମଇ । ଏଥିରେ ମନୁଷ୍ୟ ଓ ପଶୁ ଜାତର ଖାଦ୍ୟ ହୁଅଇ । ପାଟଣା ସୀମାରେ ବୁଟ ଅତି ଉତ୍ତମ ପୁଣି ଅଧିକାଇ ଜନ୍ମଇ ।

ଶିଷ୍ୟ । ଅବଧାନ, ଗହମରୁ କିସ ଉତ୍ପନ୍ନ ହୁଅଇ ?

ଗୁରୁ । ପ୍ରଥମରେ ତହିଁର ମଇଦା ହୁଅଇ ପୁଣି ସେହି ମଇଦାରୁ ରୋଟୀ, ପୁରି, ଇତ୍ୟାଦି ଜନ୍ମଇ ।

ଶିଷ୍ୟ । ଯବରୁ କି ଉତ୍ପନ୍ନ ହୁଅଇ ?

ଗୁରୁ । ତହିଁରୁ ରୋଟୀ, ଛତୁ, ଇତ୍ୟାଦି ହୁଅଇ । ପୁଣି ଇଉ-ରୋପ ଦେଶରେ ତହିଁରୁ ଏକ ପିଇବାର ଦ୍ରବ୍ୟ ପ୍ରସ୍ତୁତ ହୁଅଇ ।

ଶିଷ୍ୟ । ଶସ୍ୟର ନଡାରେ ପ୍ରୟୋଜନ କି ?

ଗୁରୁ । ଯେମନ୍ତ ଓଦା ଭୂମିରେ ସଫଳ ଶୀଷା ପଡ଼ ନ ଥାଏ ପୁଣି ଗ୍ରାମଲୋକମାନଙ୍କର ଗୃହ ଯେମନ୍ତ ଛାଉଣି ହୁଅଇ ପୁଣି ଆଉ୨ କର୍ମଇ ହୁଅଇ ଏହିନିମନ୍ତେ ନଡାର ପ୍ରୟୋଜନ ଅଛି ।

ଶିଷ୍ୟ । ଭଲ ଅବଧାନ, ଶସ୍ୟର ନଡା ଏମନ୍ତ ଫେଲ ପଚ ଚିକ୍କଣ କପାଁ ?

ଗୁରୁ । ତାହାର ନଡାରେ ବୃଷ୍ଟି ଜଳ ଲାଗିଲେ ଯେମନ୍ତ ହାନି ନୁହଇ ଏହିନିମନ୍ତେ ତାହା ଚିକ୍କଣ ହୁଅଇ ।

ଶିଷ୍ୟ । ନଡାରେ ଏମନ୍ତ ଗଣ୍ଠି ପର୍ବ ହେବାର ଫଳ କି ?

ଗୁରୁ । କ୍ଷେତରେ ବାୟୁରେ ଯେମନ୍ତ ଶସ୍ୟ ନଡା ଭାଙ୍ଗି ନ ପଡଇ ଏହିନିମନ୍ତେ ତାହାର ଗଣ୍ଠି ପୁଣି ଫଳର ପ୍ରୟୋଜନ ।

ଶିଷ୍ୟ । ଶସ୍ୟର ନଡା ବେଳକୁବେଳ ନଇଁବାଯୋଗ୍ୟ ପୁଣି ସରୁ ହୁଅଇ କପାଁ ?

ଗୁରୁ । ଏମନ୍ତ ନୋହିଲେ ପକ୍ଷିଗଣ ତାହାର ଉପରେ ବସି ପକ୍ୱ ଅପକ୍ୱ ଫଳ ସମସ୍ତ ଭକ୍ଷଣ କରନ୍ତେ ।

ଶିଷ୍ୟ । ଭଲ ଅବଧାନ, ଶୀତକାଳରେ ଶସ୍ୟର ଗଛ କପ୍ରକା-ରେ ରକ୍ଷା ପାଏ ?

ଗୁରୁ । ଶୀତକାଳରେ ତାହାର ଚାରିଆଡେ ଘାସର ପ୍ରାୟେ ଅନେକ୨ ପର୍ବ ଥାଏ । ଗ୍ରୀଷ୍ମକାଳରେ ସେହି ସମସ୍ତ ପର୍ବ ଶୁଷ୍କ ହୋଇ ପଡଇ । ତହିଁରେ କ୍ରମେ୨ ଶସ୍ୟ ନଡା ବଢି ଉଠଇ ପୁଣି ପୁଷ୍ଟ ହୁଅଇ ।

ଶିଷ୍ୟ । ଶସ୍ୟର ଫଳ କି ପ୍ରକାରେ ରକ୍ଷା ପାଏ ?

ଗୁରୁ । କଠିଣ ଖୋସାରେ ଅର୍ଥାତ ସୂର୍ଯ୍ୟର ତାପରେ ଯେମନ୍ତ ପକ୍ୱ ଫଳ ଦଗ୍ଧ, ନଷ୍ଟ ନୁହଇ କଅବା ବୃଷ୍ଟି କୁହୁଡରେ ନ ପଚଇ ପୁଣି ଶସ୍ୟ କାଟିବା ସମୟରେ କୃଷକମାନେ ଘରକୁ ଅଣି ଗଦା କଲେ ଯେମନ୍ତ ବାହାର ହୋଇ ମାଟିରେ ନ ପଡଇ ପୁଣି ନ ହରାଯାଏ ଏହିନିମନ୍ତେ କଠିଣ ଖୋସାର ଭିତରେ ସୁରକ୍ଷିତ ଅଛି ।

ଶିଷ୍ୟ । କି ପ୍ରକାରେ ଶସ୍ୟର ଫଳ ବୃଦ୍ଧି ପାଏ ପୁଣି ପକ୍ୱ ହୁଅଇ ?

ଗୁରୁ । ବୃଷ୍ଟି ପୁଣି କୁହୁଡରେ ପୁଷ୍ଟ ହେଲେ ସୂର୍ଯ୍ୟର ତାପରେ କ୍ରମେ୨ ଶୁଷ୍କ ହୋଇ ସୁପକ୍ୱ ହୁଅଇ । ଯେବେ ଛିନ୍ନ ହୋଇ କଞ୍ଚ ଦିନ କ୍ଷେତରେ ଛଡା ହୋଇ ଥାଏ ତେବେ ବିଶେଷ ପକ୍ୱ ହୁଅଇ ।

ଶିଷ୍ୟ । ଶସ୍ୟର କେତେ ଫଳ ଜନ୍ମଇ ?

ଗୁରୁ । ଅତି ବହୁତଇ ନ ଜନ୍ମଇ ପୁଣି ଅତି ଅଳ୍ପହିଁ ନ ଜନ୍ମଇ । ଅର୍ଥାତ ଲୋକମାନେ ଅଳ୍ପ ମୂଲ୍ୟରେ ଅଧିକ ପାଇବାକୁ ପାରନ୍ତି ଏମନ୍ତଇ ନୋହେ ପୁଣି ଅଭାବରେ ଥରକୁଥର ଦୁର୍ଭିକ୍ଷ୍ୟ ଜନ୍ମଇ ଏମନ୍ତଇ ନୋହେ । ଯେ ସମୟରେ ଏକ ଦେଶରେ ଦୁର୍ଭିକ୍ଷ୍ୟ ହୁଅଇ ସେ କାଳରେ ଆନ ଦେଶରୁ ଭକ୍ଷ୍ୟ ମିଳିବାକୁ ପାରଇ ଏଥିରେ ପରମେଶ୍ୱରଙ୍କ କେମନ୍ତ ଅନୁଗ୍ରହ ପ୍ରକାଶ ହୁଅଇ ।

ଶିଷ୍ୟ । ପ୍ରତ୍ୟେକ ନଡାରେ କେତେ ଫଳ ଜନ୍ମଇ ?

ଗୁରୁ । ତହିଁରେ ଏତେ ଫଳ ଜନ୍ମଇ ଯେ ତାହା ଶୁଣି କେହି ବିଶ୍ୱାସ ନ କରନ୍ତି । ଲେଖାଅଛି ଯେ ଏକ ଗହମ ବୀଜରୁ ଏକଶ ନଡା ଜନ୍ମିଥିଲା ପୁଣି ସେହି ସମସ୍ତ ନଡାର ଶିଷାରେ ଦୁଇ ସହସ୍ର ଫଳ ଗଣା ହୋଇଥିଲା ।

ଶିଷ୍ୟ । ହାଁ, ଏହା ପ୍ରାୟେ ଅବିଶ୍ୱାସନୀୟ ପ୍ରମାଣ । ଅମୃତ ବୋଧ ହୁଅଇ ଏମନ୍ତ ସର୍ବଦା ନ ଫଳଇ ।

ଗୁରୁ । ସର୍ବଦା ଏକ ପ୍ରକାର ନ ଫଳଇ ପ୍ରମାଣ । ପୁଣି କ୍ଷେତ୍ରର ଗୁଣାଗୁଣ, କୃଷକର ଯତ୍ନ ବିଶେଷ, ବୀଜର ଭଲମନ୍ଦ ବୁଣିବାର ତାତ୍ପର୍ଯ୍ୟ, ଇତ୍ୟାଦିରେ ବିଶେଷ ଫଳଇ ।

ଶିଷ୍ୟ । ଶସ୍ୟରେ ଈଶ୍ୱରର ନିପୁଣତା ପୁଣି ଅନୁଗ୍ରହ ଆଉ କି ପ୍ରକାରେ ଜଣା ଯାଉଅଛି?

ଗୁରୁ । ଏଥିରେ ପରମେଶ୍ୱରର ଅନୁଗ୍ରହ ଭଲଉପରେ ଦେଖା ହେଉଅଛି । ଦେଖ, ଗୋଲାର ମଧ୍ୟରେ ଶସ୍ୟ ରକ୍ଷା କରି ଦୁର୍ଭିକ୍ଷ୍ୟ ସମୟରେ ତହିଁରେ ପ୍ରାଣ ଧାରଣ କରନ୍ତି । ଆଉ ଫଳ ଏକ ବରଷ ପର୍ଯ୍ୟନ୍ତ ରକ୍ଷା ନ ପାଏ ପୁଣି ଆଉ ଫଳ ପକ୍ୱ ହେଲେ ଏକ ମାସ କିବା ଏକ ପକ୍ଷ କି ଏକ ଦିନ ପର୍ଯ୍ୟନ୍ତେଇ ଭଲ ନ ଥାଏ । ପୃଥିବୀସ୍ଥ ଫଳର ମଧ୍ୟରେ ଆମ୍ଭମାନଙ୍କର ଭକ୍ଷଣାର୍ଥେ ଶସ୍ୟର ତୁଲ୍ୟ ଆଉ କୌଣସି ଜୀବନୋପାୟ ଫଳ ନାହିଁ । ଦେଖ, ପ୍ରତ୍ୟହ ଆମ୍ଭେମାନେ ଅନ୍ନାଦି ଭୋଜନ କରୁଅଛୁଁ, ତଥାପି ତହିଁରେ ଅରୁଚି ନ ଜନ୍ମଇ । ଏହିନିମନ୍ତେ ଶସ୍ୟ ସମସ୍ତ ପ୍ରାଣିବର୍ଗର ପ୍ରାଣ-ଧାରଣର ପ୍ରଧାନ ଉପାୟ ହୋଇଅଛି ପୁଣି ସେ ବିଷୟରେ ଆମ୍ଭେ-ମାନେ କେମନ୍ତ ଅବିବେଚକ । ଦେଖ, ନିତ୍ୟ ସେହି ଭକ୍ଷ୍ୟ ପାଇ ଆମ୍ଭେମାନେ ଅତ୍ୟଳ୍ପ ଉପକାର ମାନ୍ୟ କରୁଅଛୁଁ ।

ଶିଷ୍ୟ । ଯେ ଶସ୍ୟ ଭକ୍ଷଣର ନିମନ୍ତେ ନୋହେ ତାହାର ମଧ୍ୟରେ କି ଅତି ଉପକାରକ ଅଛି?

ଗୁରୁ । ମସିନା ପୁଣି ଛଣପଟରେ ଅନେକ ପ୍ରୟୋଜନ ଅଛି । ମସିନାରେ କୃଷକ ଲୋକମାନଙ୍କର ଅନେକ ଲାଭ ପୁଣି ଆଉ ଲୋକମାନଙ୍କରଇ ମହା ଉପକାର ଅଟଇ ।

ଶିଷ୍ୟ । ମସିନାରୁ କି ପ୍ରକାରେ ଲାଭ ପୁଣି ଉପକାର ହେବାକୁ ପାରଇ?

ଗୁରୁ । ତାହାର ବୀଜରୁ ତୈଲ ଜନ୍ମଇ ପୁଣି କାଣ୍ଡରୁ ଯେପାରୁ

ସୂକ୍ଷ୍ମ ବସ୍ତ୍ର ଜନ୍ମଇ । ସେ ବସ୍ତ୍ର ଅତି ପୁରୁଣା ହେଲେ ତହିଁରୁ ଉତ୍ତମ ଶୁକ୍ଳବର୍ଣ୍ଣ କାଗଜ ନିର୍ମିତ ହୁଅଇ ।

ଶିଷ୍ୟ । ଜୀର୍ଣ୍ଣ ବସ୍ତ୍ରରୁ କି କାଗଜ ନିର୍ମିତ ହୁଅଇ ?

ଗୁରୁ । ହିଁ, ଯନ୍ତ୍ରରେ ସେ କନା ପେଷଣ କରି ଜଳ ପୁଣି ଶିରୀଷରେ ତାହା ଗୋଳାଇ ସମାନ ଖଣ୍ଡରେ ଢାଳନ୍ତି । ଏହିରୂପେ ଆମ୍ଭମାନଙ୍କର ବ୍ୟବହାରର ନିମନ୍ତେ ବଡ ପ୍ରୟୋଜନ ଯୋଗ୍ୟ ବସ୍ତୁ ପ୍ରସ୍ତୁତ କରଇ । ପୁଣି ସେ ନୁଗା ଯେବେ ମୋଟା ହୁଅଇ ତେବେ ତହିଁରୁ ମୋଟା କାଗଜ ଜନ୍ମଇ ।

ଶିଷ୍ୟ । ଛଣପଟରେ ପ୍ରୟୋଜନ କି ?

ଗୁରୁ । ତହିଁରୁ ମୋଟା ବସ୍ତ୍ର ବୁଣି ନୌକାର ପାଲ ପୁଣି ବଡ ଥଳିଆ ଇତ୍ୟାଦି ପ୍ରସ୍ତୁତ କରନ୍ତି । ପୁଣି ତହିଁରେ ଦଉଡି ଓ ଜାହାଜର କାଛି ହୁଅଇ । ଏନିମନ୍ତେ ଏହି ସମସ୍ତ ବିଷୟ ବିବେଚନା କଲେ ଏହି ଜଗତ ଅସଂଖ୍ୟ ବହୁମୂଲ୍ୟ ବସ୍ତୁର ଏକ ଭଣ୍ଡାରସ୍ୱରୂପ ହୋଇଅଛି ଏହା ଅବଶ୍ୟ ବୋଧରେ ଆସଇ ।

---

ପେଣ୍ଡ ଆଦି ଜାତି ବସ୍ତୁ ବିଷୟରେ ।

ଗୁରୁ । ଆସ, ଆମ୍ଭେମାନେ ଏବେ ବସ୍ତୁ ବିବେଚନାର ଶେଷଭାଗ ଅର୍ଥାତ୍ ପେଣ୍ଡ ବସ୍ତୁର ବିବେଚନା କରୁ ।

ଶିଷ୍ୟ । ଭଲ ଅବଧାନ, ପ୍ରାଣୀ, ବୃକ୍ଷାଦି ଯେମନ୍ତ ଜାତି, ବର୍ଗାଦିରେ ବିଭକ୍ତ ଅଛି ପେଣ୍ଡର ବସ୍ତୁ କି ସେରୂପେ ବିଭକ୍ତ ହୁଅଛି ?

ଗୁରୁ । ହିଁ, ପେଣ୍ଡଜାତି ସମସ୍ତ ବସ୍ତୁ ପଥର, ଲବଣ, ତରଳିବାର ଦ୍ରବ୍ୟ, ଧାତୁ, ଏହି ଚାରି ଜାତିରେ ବିଭକ୍ତ ଅଛି ପୁଣି ତାହାର ମଧ୍ୟରେ ବର୍ଗ, ଗଣ, ପ୍ରକାର ଅଛି ।

ଶିଷ୍ୟ । ପଥରର କେତେ ବର୍ଗ ଅଛି ?

ଗୁରୁ । ମୃତ୍ତିକାମୟ, ଲବଣମୟ ଏହି ଦୁଇ ବର୍ଗ ଅଛି ।

ଶିଷ୍ୟ । ସବୁ ମୃତ୍ତିକା ପଥର କି ଏକ ପ୍ରକାର ?

ଗୁରୁ । ନା, ତାହା ଦୁଇ ପ୍ରକାର ଅଛି । ଏକର ଦେଇ କାଚ କାଟଇ ପୁଣି ଅନ୍ୟର ଦେଇ କାଚ ନ କାଟଇ ।

ଶିଷ୍ୟ । ପ୍ରଥମ ପ୍ରକାରର ମଧ୍ୟରେ ପ୍ରଧାନ ପଥର କି ?

ଗୁରୁ । ପ୍ରଧାନ ପଥର ମଣି ପୁଣି ରତ୍ନାଦ ଅର୍ଥାତ ହୀରା, ଚୁନି, ପୋଖରାଜ, ପାନ୍ନା, ମାଣିକ୍ୟ, ଯାମୁଲ୍ଲା, ସ୍ଫଟିକ, ଇତ୍ୟାଦି ।

ଶିଷ୍ୟ । ଏହି ସମସ୍ତର ମଧ୍ୟରେ ବହୁମୂଲ୍ୟ କି ?

ଗୁରୁ । ସେମାନଙ୍କର ପରିମାଣ ଜ୍ୟୋତି ଅନୁସାରେ ମୂଲ୍ୟ ଅଧିକ ହୁଅଇ ପୁଣି ହୀରା ସବୁଠାରୁ ଅଧିକ ମୂଲ୍ୟବାନ ଜାଣିବ ।

ଶିଷ୍ୟ । ହୀରାର କେତେ ମୂଲ୍ୟ ?

ଗୁରୁ । ପରିମାଣରେ ହୀରାର ମୂଲ୍ୟ ନିର୍ଣ୍ଣିତ ହୁଅଇ । ଏହିନିମନ୍ତେ କୌଣସି ହୀରାର ମୂଲ୍ୟ ଏକ ଶ ଟଙ୍କା କୌଣସି ହୀରାର ମୂଲ୍ୟ ୩୦୦ ତିନ ଶ ଟଙ୍କା କୌଣସି ହୀରାର ମୂଲ୍ୟ ଏକ ୧୦୦୦ ସହସ୍ର ଟଙ୍କା ହୁଅଇ ଇତ୍ୟାଦି ଜାଣିବ । ଏକ ସମୟ ମନ୍ଦ୍ରାଜର ବନ୍ଦରେ ଏକ ଧନ ଲୋକର ନିକଟରେ ଏକ ଲକ୍ଷ ପଁଇରିଶ ହଜାର ଟଙ୍କାରେ ଏକ ହୀରା ବିକ୍ରୀତ ହୋଇଥିଲା । ପୁଣି ଦକ୍ଷିଣ ଅମେରିକାରେ ଏକ ହୀରା ମିଳିଥିଲା ତାହାର ମୂଲ୍ୟ ପାଞ୍ଚ ନିୟୁତ ଛଲକ୍ଷ ତେଇଶିଶ ହଜାର ଅଠଶ ଟଙ୍କା ନିର୍ଣ୍ଣୀତ ହୋଇଥିଲା । ହୀରାର ମଧ୍ୟରେ ସ୍ଫଟିକ ପୁଣି ବରଫର ପ୍ରାୟେ ଶୁଭ୍ର ଯେ ହୀରା ସେ ସବୁଠାରୁ ବହୁମୂଲ୍ୟ ହୁଅଇ ।

ଶିଷ୍ୟ । ଏହି ସମସ୍ତ ମଣି ପୁଣି ରତ୍ନ କେଉଂ ସ୍ଥାନରେ ମିଳଇ ?

ଗୁରୁ । ଖଣି, ପର୍ବତ ବିଶେଷ, ନଦୀ ବିଶେଷର ବାଲି ମଧ୍ୟରେ ମିଳଇ ।

ଶିଷ୍ୟ । ଭଲ ଅବଧାନ, ଏହି ବର୍ଗର ମଧ୍ୟରେ ମଣି ରତ୍ନାଦ

ଛଡା ଅମ୍ଭମାନଙ୍କର ପ୍ରୟୋଜନ ଯୋଗ୍ୟ ଅଉ କେଉଂ ପଥର ଅଛି କି ନାହିଁ ?

ଗୁରୁ । ହିଁ, ଏହି ବର୍ଗର ମଧ୍ୟରେ ଅଗ୍ନିପଥର ବାଲୁକାଦି ଗଣିତ ହୁଅଇ । ଏହି ଦୁଇରେ କାଚ ପୁଣି ପରକଳା ଦରପଣ ଇତ୍ୟାଦି ପ୍ରସ୍ତୁତ ହୁଅଇ ।

ଶିଷ୍ୟ । ଯେ ପଥର ରେଖାରେ ପରକଳା ନ କାଟଇ ତାହାର ମଧ୍ୟରେ କି୨ ଗଣିତ ଅଛି ?

ଗୁରୁ । ତାହାର ମଧ୍ୟରେ ଏହି ସମସ୍ତ ମୃତ୍ତିକା ଯହିଁରେ ଅମ୍ଭ-ମାନଙ୍କର ଇଟା ପୁଣି ବାସନ ଇତ୍ୟାଦି ନିର୍ମାଣ ହୁଅଇ ।

ଶିଷ୍ୟ । ଅବଧାନ, ଅମ୍ଭେ ଶୁଣିଅଛୁଁ ମୃତ୍ତିକା ସମସ୍ତ ପରତ୨ ବିଶେଷଉପରେ ଥାଏ । ଏ କଥା କି ସତ୍ୟ ?

ଗୁରୁ । ହିଁ, ପ୍ରଥମରେ ସବୁ ଉପରେ କୃଷ୍ଣବର୍ଣ୍ଣ ସାର ମୃତ୍ତିକା ଥାଏ ସେ ମୃତ୍ତିକାରେ ଶସ୍ୟ ପୁଣି ବୃକ୍ଷାଦି ଜନ୍ମଇ । ତାହାର ତଳେ କର୍ଦ୍ଦମାକାର ସ୍ଥୂଳ ମୃତ୍ତିକା ଥାଏ ତହିଁରେ ଇଟାଆଦି ପ୍ରସ୍ତୁତ ହୁଅଇ । ତାହାର ତଳେ ଅନେକ କଙ୍କରଯୁକ୍ତ ମୃତ୍ତିକା ଥାଏ ତାହା ନାନା କର୍ମରେ ଲାଗଇ । ପୁଣି ତାହାର ତଳେ ଚୂର୍ଣ୍ଣମୟ ମୃତ୍ତିକା ଥାଏ ସେ ମୃତ୍ତିକା ପ୍ରାୟ ରତ୍ନାଦିର ଖଣି ନିକଟସ୍ଥ ହୁଅଇ । ତା-ହାର ତଳେ ଅଙ୍ଗାରମୟ ନାନା ପ୍ରକାର ମୃତ୍ତିକା ଥାଏ । ହିମ ସମୂହ ଦେଶରେ ଅଗ୍ନିର ନିମନ୍ତେ ତାହାର ଅନେକ ପ୍ରୟୋଜନ ହୁଅଇ । ପୁଣି ତଳେ୨ ସର୍ବଦା ଏହି ପ୍ରକାର ଥାଏ ତାହା ନୋହେ ପୁଣି ସେମାନଙ୍କର ଥିବା ଏହିରୂପ ଅନୁକ୍ରମ ଜାଣିବ ।

ଶିଷ୍ୟ । ଏହି ବର୍ଗର ମଧ୍ୟରେ କୌଣସି ଅପୂର୍ବ ପଥର ଅଛି କି ନାହିଁ ?

ଗୁରୁ । ହିଁ, ଅଦାହ୍ୟ ନାମରେ ଏକ ପଥର ଅଛି ତାହା ଅଗ୍ନିରେ ପକାଇଲେ ସେ ପ୍ରଜ୍ୱଳିତ ହୁଅଇ ପୁଣି ନ ପୋଡଇ ।

ଶିଷ୍ୟ । ଲବଣମୟ ବର୍ଗର ମଧ୍ୟରେ କି କି ପଥର ଅଛି?

ଗୁରୁ । ତାହାର ମଧ୍ୟରେ ପଥର ଚୂନ, ଖଡ଼ି, ମର୍ମର ଗୃହାଦି ନିର୍ମାଣ ଯୋଗ୍ୟ ଅନେକ ଅନେକ ପଥର ଅଛି ।

ଶିଷ୍ୟ । ଭଲ ଅବଧାନ, ପଥର ଚୂନରେ ପ୍ରୟୋଜନ କି?

ଗୁରୁ । ତାହା ଅନେକ ଅନେକ ପ୍ରଧାନ କର୍ମରେ ଲାଗଇ । ଅଟ୍ଟାଳିକାଦି ନିର୍ମାଣରେ ତହିଁରେ ଏମନ୍ତ ଗାରା ପୁଣି ଲେପ ପ୍ରସ୍ତୁତ ହୁଅଇ ଯେ ତାହା ଅଟ୍ଟାଳିକାରେ ଲେପିଲେ ପ୍ରାୟ ଦୁଇ ହଜାର ବରଷ ପର୍ଯ୍ୟନ୍ତ ପାଷାଣରେ ନ୍ୟାୟ କଠିଣ ହୋଇ ଥାଏ । ପୁଣି ସେ ଚୂନ କୃଷି କର୍ମରେ ଲାଗଇ । ଯେଣୁ ତାହା ଭୂମିର ମଧ୍ୟରେ ପକାଇଲେ ଦୁଷ୍ଟ କୀଟାଦି ନାଶ ଯାଏ ପୁଣି ଜଳଧାରଣର ଶକ୍ତିରେ ଭୂମିକୁ ସାର ଭୂମି କରଇ । ତହିଁ ଉତ୍ତାରୁ ଚିନି ନିର୍ମଳ କରିବାକୁ ପୁଣି ସାବୁନ ପ୍ରସ୍ତୁତ କରିବାକୁ ଓ ଲୋହା ତରଳାଇବାକୁ ପୁଣି ଆଉ ଆଉ କର୍ମ କରିବାକୁ ତାହାର ପ୍ରୟୋଜନ ଅଛି ।

ଶିଷ୍ୟ । ଖଡ଼ି କି କର୍ମରେ ଲାଗଇ?

ଗୁରୁ । ଯେ ଖଡ଼ି ବଡ଼ କଠିଣ ତାହା ଗୃହାଦି ନିର୍ମାଣରେ ପାଷାଣ ହୁଅଇ । ପୁଣି ତହିଁରେ ଗାରା ପ୍ରସ୍ତୁତ ହୁଅଇ । ଲଣ୍ଡନ ନଗରରେ ପ୍ରାୟ ସମସ୍ତ କୋଠା ଏହାର ଗାରାରେ ନିର୍ମିତ । ପଥର ଚୂନର ପ୍ରାୟେ ଏହି ଖଡ଼ି ଉପକାରୀ । ଶିଳ୍ପକାରୀମାନେ ସେ ଖଡ଼ିରେ ଛାଞ୍ଚ ପ୍ରସ୍ତୁତ କରି ଧାତୁ ଦ୍ରବ୍ୟ ଗଳାଇ ପ୍ରତିମୂର୍ତ୍ତି ନିର୍ମାଣ କରନ୍ତି ପୁଣି ବଢ଼ାଇ ଲୋକମାନେ ତହିଁରେ କାଠରେ ରେଖା ଦିଅନ୍ତି । ପୁଣି ଶୁଖିବା ଅର୍ଥାତ ଶୋଷକ ଔଷଧର ମଧ୍ୟରେ ଏହାର ଶୁଦ୍ଧତା ଅତି ଉତ୍ତମ ଔଷଧ ।

ଶିଷ୍ୟ । ମର୍ମର ପଥରରେ କି କର୍ମ ହୁଅଇ?

ଗୁରୁ । ମର୍ମର ଅର୍ଥାତ ଶ୍ୱେତ ପଥର ଏହା ଅନେକ ପ୍ରକାର ଅଛି । ତହିଁରେ ଅଟ୍ଟାଳିକାଦିର ଶୋଭା କରଇ ପୁଣି ପ୍ରତିମୂର୍ତ୍ତି

ନିର୍ମାଣ କରଇ । ପୁଣି ଗୃହାଦିର ମେଝରେ ବନ୍ଦ କରନ୍ତି ପୁଣି କେ-ତେକ ଶ୍ୱେତ ପଥର ଯୋଡଗଲେ ଖଡ଼ିର ପ୍ରାୟେ କୃଷି କର୍ମରେ ଲାଗଇ ।

ଶିଷ୍ୟ । ଦ୍ୱିତୀୟ ଜାତ ପଥର ଲବଣମୟ ଏହି କଥା ଆପଣ ପୂର୍ବେ କହିଲେ । ଭଲ ଏହି ଜାତର ମଧ୍ୟରେ କେତେ ବର୍ଗ ଅଛି ।

ଗୁରୁ । ମୃତ୍ତିକାମୟ ପୁଣି ଧାତୁମୟ ଲବଣର ଏହି ଦୁଇ ବର୍ଗ ଅଛି ।

ଶିଷ୍ୟ । ପ୍ରଥମ ବର୍ଗର ମଧ୍ୟରେ କେତେ ପ୍ରକାର ଲବଣ ଅଛି ?

ଫଗୁରୁ । ଟକିରି ପୁଣି ପଙ୍ଗା ଲବଣ, ବିଟ ଲବଣ, ସୋରା ଇତ୍ୟାଦି ।

ଶିଷ୍ୟ । ଫଟକିରି କି କର୍ମରେ ଲାଗଇ ?

ଗୁରୁ । ରଙ୍ଗକରମାନେ ତହିଁରେ ବସ୍ତ୍ରାଦିକୁ ପକା ରଙ୍ଗ କରନ୍ତି । ପୁଣି ଚର୍ମକାରମାନେ ତହିଁରେ ଚର୍ମ ଟାଣ କରନ୍ତି । ପୁଣି ବଢକର-ମାନେ ତହିଁରେ ବଢ ସୁଚିକ୍କଣ କରନ୍ତି ପୁଣି କାଗଜଗରମାନେ ତହିଁରେ କାଗଜ ବେଗେ ଅଯୋଡ଼ କରନ୍ତି ପୁଣି ଛାପାକରମାନେ ତହିଁରେ କାଗଜର ଚିକ୍କଣତା ଦୂର କରନ୍ତି ନୋହିଲେ କାଗଜରେ ଛାପାର କାଳି ସୁନ୍ଦର ନ ଲାଗଇ । ପୁଣି କୌଣସି୨ ସମୟରେ ଫଟକିରିରେ ଜଳ ନିର୍ମଳ କରନ୍ତି ।

ଶିଷ୍ୟ । ଅମ୍ଭମାନଙ୍କର ବ୍ୟଞ୍ଜନ ସୁସ୍ୱାଦୁ ବିନୁ ପଙ୍ଗା ଲବଣର ଆଉ କୌଣସି ପ୍ରୟୋଜନ ଅଛି କି ନାହିଁ ?

ଗୁରୁ । ହିଁ, ତାହାବିନୁ ଅମ୍ଭମାନଙ୍କର ଭୁକ୍ତ ଦ୍ରବ୍ୟ ପରିପାକା-ର୍ଥରେ ତାହାର ପ୍ରୟୋଜନ ହୁଅଇ । ପୁଣି ଅଧିକ ହେଲେ ଭୁକ୍ତ ଦ୍ରବ୍ୟକୁ ଜୀର୍ଣ୍ଣ ନ କରି ବରଞ୍ଚ ତାହାକୁ କଠିଣ କରି ବହୁତ ଦିନ ପର୍ଯ୍ୟନ୍ତେ ଅପକ୍ୱ ରଖଇ ।

ଶିଷ୍ୟ । ବିଟଲବଣରେ ଭେଦକ ଔଷଧ ପ୍ରସ୍ତୁତ ହୁଅଇ ତହିଁର ଏହି ପ୍ରୟୋଜନ ଅମ୍ଭେ ଜାଣି ପୁଣି ସୋରାର କି ପ୍ରୟୋଜନ ତାହା ଜାଣିବାକୁ ବାଞ୍ଛା କରି ।

ଗୁରୁ । ସୋରା ନାନା ଔଷଧରେ ମିଶଇ ପୁଣି ଅନେକ ଶିଳ୍ପ କର୍ମରେଇ ଲଗଇ । ପୁଣି ଭକ୍ଷ୍ୟ କଞ୍ଚା ମାଂସାଦ ଦରସିନ୍ଧା ସଡା ନୋହିବାର୍ଥେ ପଙ୍ଗା ଲବଣର ସଙ୍ଗେ ମିଶାଇ କଞ୍ଚା ମାଂସ ଅାଦକୁ ଲେପନ କରନ୍ତି । ଅଉ ଯୁଦ୍ଧ ସମୟରେ ସୋରାରେ ଅନେକ ପ୍ରୟୋଜନ ହୁଅଇ ଦେଖ, ସେ ସୋରାରୁ ବାରୁଦ ପ୍ରସ୍ତୁତ ହୁଅଇ ।

ଶିଷ୍ୟ । ଏବେ ଅମ୍ଭକୁ ଅନୁଗ୍ରହ କର ଧାତୁମୟ ପ୍ରଧାନ ଲବଣର ବୃତ୍ତାନ୍ତ ବୋଲନ୍ତୁ ।

ଗୁରୁ । ଧାତୁମୟ ଲବଣର ମଧ୍ୟରେ ପ୍ରଧାନ ତୁତିୟା । ସେ ତୁତିୟା ନୀଲ, ପୀତ, ଶୁକ୍ଳବର୍ଣ୍ଣ ଭେଦରେ ତିନ ପ୍ରକାର ହୁଅଇ । ନୀଲ ତୁତିୟାରେ ବଡ ପକ୍ଷିର ପକ୍ଷ ଓ ଶିକାରୀ ବନ୍ଦୁକ ପୁଣି ଗୃହା ଖାଇବାର ପାତ୍ର ରଙ୍ଗ କରନ୍ତି । ପୁଣି ପୀତ ତୁତିୟାରେ କାଳୀ ପ୍ରସ୍ତୁତ କରନ୍ତି ପୁଣି ବନାତ ଅଥବା ଟୋପିର ରଙ୍ଗ କରନ୍ତି । ଅଉ ଶ୍ୱେତ ତୁତିୟାରେ ଔଷଧ ପ୍ରସ୍ତୁତ କରନ୍ତି ଓ ବଢ଼ାଇ ଲୋକମାନେ ଅପଣାମାନଙ୍କର ତୈଳାଦ କରନ୍ତି । ପୁଣି ତହିଁରେ ଚିରସ୍ଥାୟି ଶ୍ୱେତବର୍ଣ୍ଣ ଏକ ସୁନ୍ଦର ରଙ୍ଗ ପ୍ରସ୍ତୁତ କରନ୍ତି ।

ଶିଷ୍ୟ । ଅଙ୍ଗାରଜାତ ଦହନୀୟ ବସ୍ତୁର ମଧ୍ୟରେ କଅଣ ଗଣିତ ହୁଅଇ ?

ଗୁରୁ । ଗନ୍ଧକ, ମୃତ୍ତିକା ତୈଳ, ମୃନ୍ମୟ ଅଙ୍ଗାର, ଝୁଣା, ଇତ୍ୟାଦ ତା ମଧ୍ୟରେ ଗଣିତ ହୁଅଇ ।

ଶିଷ୍ୟ । ଗନ୍ଧକ କଅଣ କର୍ମରେ ଲଗଇ ?

ଗୁରୁ । ବାରୁଦ ପ୍ରସ୍ତୁତ କରିବାକୁ ପୁଣି ବନାତ ଛିଟ ଇତ୍ୟାଦର ରଙ୍ଗ କରିବାକୁ ଇତ୍ୟାଦ ନାନା କର୍ମରେ ଲଗଇ ପୁଣି ତହିଁରୁ କୌଣସି ଔଷଧଇ ପ୍ରସ୍ତୁତ ହୁଅଇ ।

ଶିଷ୍ୟ । ମୃତ୍ତିକାର ତୈଳରେ ପ୍ରୟୋଜନ କି ?

ଗୁରୁ । ପ୍ରୟୋଜନ ଅଛି । ପାରଶୀ ଲୋକମାନେ ଶରୀରର

ସୂତ୍ରଧାର ନିମନ୍ତେ ସେହି ତୈଳ ପାନ କରନ୍ତି । ପୁଣି କୌଣସି୨ ସ୍ଥାନରେ ସାଧାରଣ ତୈଳ ଅଭାବରେ ତହିଁରେ ପ୍ରଦୀପରେ ଜଳାନ୍ତି । ପୁଣି ଆଉ ତୈଳ ମିଶ୍ରିତ କରି ଉତ୍ତମ ଚିକ୍କଣକାରି ତୈଳାଦି ପ୍ରସ୍ତୁତ କରନ୍ତି ।

ଶିଷ୍ୟ । ମୃଣ୍ମୟ ଅଙ୍ଗାରରେ ପ୍ରୟୋଜନ କି?

ଗୁରୁ । ଅଗ୍ନିର ନିମନ୍ତେ ତହିଁରେ ବହୁତ ଉପକାର ହୁଅଇ । ଦେଖ, ହିମ ସମୂହ ଦେଶରେ ତାହା ପୋଡନ୍ତି । ପୁଣି ତାହି ବିନୁ ସେମାନଙ୍କର ଭକ୍ଷ୍ୟ ଦ୍ରବ୍ୟ ପାକ ପୁଣି ଅନେକ୨ ଶିଳ୍ପ କର୍ମ ସମ୍ପୂର୍ଣ୍ଣ ନୁହଇ ପୁଣି ଶୀତକାଳରେ ତାହା ବିନୁ ଶୀତ ନିବାରଣ ନୁହଇ ।

ଶିଷ୍ୟ । ଅବଧାନ, ଝୁଣାର କି କିଛି ମୂଲ୍ୟ ଅଛି?

ଗୁରୁ । ହିଁ, କେତେ ଝୁଣାର ମୂଲ୍ୟ ଅଛି । ଅନେକ ଦେଶରେ ସେ ଝୁଣା ଗୈଁଧ ନାମରେ ପ୍ରସିଦ୍ଧ ତହିଁରେ ଅନେକ କର୍ମ ନିର୍ବାହ ହୁଅଇ ।

ଶିଷ୍ୟ । ଏବେ ଅପଣ ଅନୁଗ୍ରହ କରି ଚତୁର୍ଥ ଜାତର ଅର୍ଥାତ୍ ଧାତୁର ବିଷୟ ପୁଣି ତାହାର ମଧ୍ୟରେ କେତେ ବର୍ଗ ଅଛି ତାହା ବୋଲନ୍ତୁ ।

ଗୁରୁ । ପିଟା ଯୋଗ୍ୟ ଓ ଅପିଟା ଯୋଗ୍ୟରେ ଧାତୁର ଦୁଇ ବର୍ଗ ଅଛି ।

ଶିଷ୍ୟ । ପିଟାଯୋଗ୍ୟ ବର୍ଗର ମଧ୍ୟରେ କି୨ ଧାତୁ ଅଛି?

ଗୁରୁ । ସ୍ୱର୍ଣ୍ଣ, ପ୍ଲାଟିନା, ରୁପା, ତମ୍ବା, ଲୋହା, ଶୀଷା, ଇତ୍ୟାଦି ଏହି ବର୍ଗର ମଧ୍ୟରେ ଅଛି । ଏହି ସମସ୍ତ ଧାତୁ ହାତୁଡର ଅପାତରେ ଭଗ୍ନ ନୁହନ୍ତି ଏହିନିମନ୍ତେ ଏମାନଙ୍କୁ ପିଟାଯୋଗ୍ୟ ବୋଲନ୍ତି ।

ଶିଷ୍ୟ । ଏହାର ମଧ୍ୟରେ ସର୍ବଦା ଅତ୍ୟନ୍ତ ପ୍ରୟୋଜନଯୋଗ୍ୟ କେଉଁ ଧାତୁ?

ଗୁରୁ । ଲୋହା ଯେହେତୁ ଦେଖ ସୁବର୍ଣ୍ଣରେ ଲୋହାର ବିକ୍ରୀର

ହେଲେହ ଲୋହାର କର୍ମ ସୁବର୍ଣ୍ଣରେ ସିଦ୍ଧ ନ ହୁଅଇ । ଅର୍ଥାତ୍ ଲୋହାଠାରୁ ସୁବର୍ଣ୍ଣ କଠିଣ ନୋହିବାରୁ ତହିଁରେ ଲଙ୍ଗଳ କିବା ନଙ୍ଗର ନିର୍ମାଣ କଲେ ସେ ବୃଥା ହୁଅଇ । ସଂକ୍ଷେପରେ ଏମନ୍ତ କହିବାକୁ ପାରି ଯେ ଲୋହା ବିନୁ ଆମ୍ଭମାନଙ୍କର କୌଣସି ବସ୍ତୁଇ ନିର୍ମାଣ ହେବାକୁ ନ ପାରଇ ଏନିମନ୍ତେ ସମସ୍ତ ଧାତୁଠାରୁ ଲୋହାରେ ଅନେକ ଉପକାର ଅଛି ।

ଶିଷ୍ୟ । ଅପିଣ୍ଡା ବର୍ଗର ମଧ୍ୟରେ କି୨ ଧାତୁ ଅଛି?

ଗୁରୁ । ସପ୍ତଦଶ ପ୍ରକାର ଧାତୁ ଅଛି । ତାହାର ମଧ୍ୟରେ ଏଦେଶରେ କେବଳ ହରିତାଳ ପୁଣି ଅଞ୍ଜନ ଏହି ଦୁଇ ପ୍ରକାର ଧାତୁ ଅତି ପ୍ରସିଦ୍ଧ ଅଛି ସେ ସମସ୍ତ ଧାତୁ ହାତୁଡିର ଆଘାତରେ ଭାଙ୍ଗଇ ଏହିନିମନ୍ତେ ଏମାନଙ୍କୁ ପିଣ୍ଡା ଧାତୁ ବୋଲନ୍ତି ।

ଶିଷ୍ୟ । ଏହି ଦୁଇର ଉପକାର କି?

ଗୁରୁ । ହରିତାଳ ଏକପ୍ରକାର ବିଷ ତଥାଚ ନାନା ଔଷଧରେ ଓ ଅନେକ୨ ଶିଳ୍ପକର୍ମରେ ଲାଗଇ । ପୁଣି ଅଞ୍ଜନରେ ଛାପାର ଅକ୍ଷର ପୁଣି ନାନା ଜାତିର ଔଷଧ ପୁଣି ନୟନର କଜ୍ଜ୍ୱଳ ଇତ୍ୟାଦି ପ୍ରସ୍ତୁତ ହୁଅଇ । ମାତ୍ର ଏଥିରେ ଏହି କଥାବାର୍ତ୍ତା ସମାପ୍ତି କରିବାକୁ ହେବ ।

ଶିଷ୍ୟ । ହେ ଅବଧାନ, ପରମେଶ୍ୱର ମନୁଷ୍ୟମାନଙ୍କର ପ୍ରାଣ ରକ୍ଷାର ଓ ଆନନ୍ଦ କରିବାର ନିମନ୍ତେ ଯେ ସବୁ ଉତ୍ତମ ବସ୍ତୁ ସୃଷ୍ଟି କରିଅଛନ୍ତି ତାହାର ବିଷୟରେ ଯେତେ ବିବେଚନା କରୁଅଛୁଁ ତେତେକ ଆଶ୍ଚର୍ଯ୍ୟ ବୋଧ ହେଉଅଛି । ମାତ୍ର ବିଶେଷ୨ ସ୍ଥାନରେ ବିଶେଷ୨ ଦ୍ରବ୍ୟ ଜନ୍ମଇ କିପାଁଇ?

ଗୁରୁ । ଯେବେ ସବୁ ଦେଶରେ ସବୁ ପ୍ରକାର ଦ୍ରବ୍ୟ ଉତ୍ପନ୍ନ ହୁଅନ୍ତା ତେବେ ଦୂର ଦେଶୀୟମାନଙ୍କର ମଧ୍ୟରେ ପ୍ରାୟ କୌଣସି ବ୍ୟବହାର ନ ହୁଅନ୍ତା । ମାତ୍ର ସମସ୍ତ ଦେଶରେ ଯେ ବସ୍ତୁ ଉତ୍ପନ୍ନ

ହୁଅଇ ତାହା ସେ ଦେଶର ବ୍ୟୟର ଉପଯୁକ୍ତ ରଖି ବାଣି
କାରମାନେ ଜାହାଜାଦି ଦ୍ୱାରା ଦେଶ ଦେଶାନ୍ତରରେ ବଳିଲ୍ଲ ଦ୍ର
ଘେନ ଯାନ୍ତି । ଏମନ୍ତେ କୃଷକମାନେ ଯେରୂପେ ମାଟି ଚଷ
ଜୀବନ କାଟନ୍ତି ସେରୂପେ ସମୁଦ୍ର ଚଷସ୍ୱରୂପ କର୍ମ କରି ନଜା
ମନୁଷମାନେ ଜୀବନ କାଟନ୍ତି । ଆଉ ଏମନ୍ତ ଏକ ଦେଶରେ ଯେ
ଜ୍ଞାନ ଓ ଉପକାରକ ବିଦ୍ୟାଦି ଥାଏ ତାହା ବାଣିଜ୍ୟ କର୍ମ ଦ୍ୱା
ଅନ୍ୟଦେଶରେ ପ୍ରବେଶ ହୁଅଇ । ପୁଣି ଭରସା ଅଛୁ ଯେ ସ
ଜ୍ଞାନ ଓ ସତ୍ୟ ଧର୍ମ ସବୁ ଦେଶରେ ବ୍ୟାପି ଯାନ୍ତେ ମନୁଷମା
ଆଉ ଯୁଦ୍ଧାଦି କର୍ମ ନ କରି କେବଳ ପରସ୍ପର ହିତାଚରଣ ପ୍
ଏକ ପାରିବାରସ୍ୱରୂପ ହୋଇ କୁଶଳରେ କାଳ କାଟିବେ ।

ପଦାର୍ଥ ବିଦ୍ୟା ସାର ସମାପ୍ତ ।

---

ORISSA MISSION PRESS.—W. BROOKS.